# ତିନି ମୋଟା ଲୋକଙ୍କ କାହାଣୀ



ୟୁରୀ ଓଲେସା

ଅନୁବାଦ - ଶକୁନ୍ତଳା ପଣ୍ଡା



# ତିନି ମୋଟା ଲୋକଙ୍କ କାହାଣୀ

ରୁଷୀୟ ଲେଖକ **Yuri Olesha** ଙ୍କର

**"The Three Fat Men"** ର ମର୍ମାନୁବାଦ

**ଅନୁବାଦିକା : ଶ୍ରୀମତୀ ଶକୁନ୍ତଳା ପଣ୍ଡା**

ସୁଚରିତା ପବ୍ଲିକେଶନ୍ସ

# ତିନି ମୋଟା ଲୋକଙ୍କ କାହାଣୀ

ପ୍ରକାଶକ :
**ସୁଚରିତା ପବ୍ଲିକେଶନ୍ସ**
୪୩୧, ଶହୀଦ ନଗର
ଭୁବନେଶ୍ୱର-୭୫୧୦୦୭,

ମୁଦ୍ରଣ : **ଅପ୍ଟିମୋ (ଅଫ୍‌ସେଟ୍) ପ୍ରିଣ୍ଟସ୍**
ସୂତାହାଟ, କଟକ-୧,

ପ୍ରଥମ ପ୍ରକାଶ : ଅକ୍ଟୋବର, ୧୯୯୮

ମୂଲ୍ୟ : ତିରିଶ ଟଙ୍କା ମାତ୍ର

**TINI MOTA-LOKANKA KAHANI**

Published by :
**Sucharita Publications**
431, Saheed Nagar, Bhubaneswar

First Edition :1998

Printed at :
**Optima (offset) Prints**
Sutahat, Cuttack-1

Price :
Rupees Thirty only

ଅଂକିତ୍ ଓ ଅମନ୍‌କୁ

— ଜେଜେମା’

# ତିନି ମୋଟା ଲୋକଙ୍କ କାହାଣୀ

## ପ୍ରସ୍ପେରୋ ଓ ଟିବୁଲ୍

ସେ ବହୁଦିନ ତଳର କଥା । ରୁଷିଆ ଦେଶରେ ଗୋଟିଏ ରାଜ୍ୟରେ ତିନୋଟି ମୋଟା ଲୋକ ଥିଲେ । ସେମାନେ ତିନି ଭାଇ । ସବୁଠାରୁ ଧନୀଲୋକ ହୋଇ-ଥିବାରୁ ସମସ୍ତେ ତାଙ୍କୁ ଅତ୍ୟନ୍ତ ସମ୍ମାନ ଦେଖାଉଥିଲେ ଏବଂ ରାଜ୍ୟର ଶାସନ କାର୍ଯ୍ୟ ସେମାନେ ହିଁ ବୁଝୁଥିଲେ ।

ରାଜଧାନୀର ଏକ ଦୃଶ୍ୟପୂର୍ଣ୍ଣ ସ୍ଥାନରେ ସେମାନଙ୍କର ମନମତାଣିଆ ବଗିଚାଟିଏ ଥିଲା । ସେହି ବଗିଚାକୁ ଲାଗି ଝଙ୍ଗମଲମଲ ପଥରର ବିରାଟ ଏକ ପ୍ରାସାଦ । ଜଗୁଆଳମାନେ ଅସ୍ତ୍ରଶସ୍ତ୍ର ଧରି ବରାବର ପହରା ଦେଉଥାଆନ୍ତି । ଶାସନ କାର୍ଯ୍ୟ ଭଲଭାବେ ଚଳାଇବାପାଇଁ ସେମାନଙ୍କର ଅନେକ ମନ୍ତ୍ରୀ ଓ କର୍ମ-ଚାରୀମାନେ ରହିଥିଲେ ।

କିନ୍ତୁ ତିନି ମୋଟା ଲୋକଙ୍କର ଗୋଟିଏ ବଡ଼ ବଦ୍‌ଗୁଣ ଥିଲା । ସେମାନେ ଭାରି ଅଳସୁଆ । ସବୁ-ବେଳେ ଭଲ ଭଲ ଜିନିଷ ଖାଇବା ଏବଂ ମଉଜ ମଜଲିସ୍‌ରେ ସମୟ ବିତାଇବା ଛଡ଼ା ସେମାନଙ୍କର ଆଉ କିଛି ଚିନ୍ତା ନଥିଲା । ପ୍ରତି ଦୁଇ ତିନି ଦିନରେ ଉଆସରେ ଭୋଜିର ଆୟୋଜନ କରାଯାଏ । ନିମନ୍ତ୍ରଣ ପାଇ କେତେଆଡୁ କେତେ ବଡ଼ ବଡ଼ ଲୋକମାନେ ଆସନ୍ତି । ନାଚ, ତାମସା, ହସଖୁସିରେ ମାତି ସମୟ କଟାନ୍ତି ।

ଭୋଜିର ପୂର୍ବଦିନରୁ ପୂଝାରୀମାନେ ଲାଗି ଲାଗି ବହୁ ରକମର ପାଟି ସୁଆଦିଆ ଖାଦ୍ୟ ପ୍ରସ୍ତୁତ କରନ୍ତି । ତିନି ମୋଟା ଲୋକମାନେ ମଧ ବହୁତ ଖାଇପାରନ୍ତି ।

ଆମ ପିଲାମାନଙ୍କୁ ଚାରିଟା ବଡ଼ ରସଗୋଲା ଦେଲେ ସେମାନେ ଖାଇପାରିବେନି । ଅଥଚ ମୋଟା ଲୋକମାନେ ଜଣକା ଦୁଇ ତିନି ହାଣ୍ଡି ଖାଇ ହଜମ କରିପାରୁଥିଲେ । ଥରେ ଗୋଟିଏ ଭୋଜିରେ ପ୍ରଥମ ମୋଟା ଲୋକଟି ଏକା ପାଞ୍ଚଟି କୁକୁଡ଼ାର ମାଂସ ଖାଇ-ଦେଇଥିଲା ।

ରାଜ୍ୟର ଲୋକମାନେ ତିନି ମୋଟା ଲୋକଙ୍କ ବିଷୟରେ ବହୁତ ମଜା ମଜା ଖବର ପାଆନ୍ତି ସବୁବେଳେ । ସମସ୍ତଙ୍କ ମନରେ ଭାରୀ ଆଗ୍ରହ, କିପରି ଥରେ ଆସି ସେ ଉଆସକୁ ଦେଖିଯାଆନ୍ତେ । କିମିତି ତିନି ମୋଟା ଲୋକମାନେ ଉଆସ ଭିତରେ ମଉଜ ମଜଲିସରେ ସମୟ କଟାନ୍ତି ? କେତେ ତାଙ୍କର ସୈନ୍ୟସାମନ୍ତ, ହାତୀ ଘୋଡ଼ା ଇତ୍ୟାଦି ସବୁ ଜାଣିବାକୁ ଭାରୀ ଇଚ୍ଛା ସମସ୍ତଙ୍କର । କିନ୍ତୁ ଏ ସୁଯୋଗ ବା ସବୁ ଲୋକଙ୍କୁ କୁଆଡୁ ମିଳିପାରିବ ?

ଥରେ ପ୍ରସ୍ପେରୋ ଓ ଟିବୁଲ୍ ନାମକ ଦୁଇଟି ସାହସୀ ଯୁବକ ସ୍ଥିରକଲେ ଯେ ନିଶ୍ଚୟ ଯେମିତିହେଲେ ତିନି ମୋଟା ଲୋକଙ୍କ ଉଆସ ଭିତରକୁ ଯାଇ ବୁଲି-ଆସିବେ । ବୁଢ଼ା ବୁଢ଼ା ଲୋକମାନେ ଏକଥା ଶୁଣି ଅବାକ୍, "ଇରେ ବାବା, ସେଠାକୁ ପୁଣି କିଏ ଯାଇ-

ପାରିବ ? ଜଗୁଆଳମାନେ ତାଙ୍କୁ ଟିକିଟିକି କରି ହାଣି-ଦେବେନି ।'' ଡରିଯାଇ ସେମାନେ ବୁଝାଇବାକୁ ଲାଗିଲେ ।

ପ୍ରସ୍ପେରୋ ଏ କଥା ଶୁଣି ଦବିଯିବା ଲୋକ ନୁହେଁ । କଳକବ୍ଜା ଖଞ୍ଜି ବନ୍ଧୁକ ତିଆରି କରି କରି ତା'ହାତ ଟାଣୁଆ ହେଇଯାଇଛି । ଦେଖିବାକୁ ସେ ଖୁବ୍ ଗୋରା ଓ ଡେଙ୍ଗା, ସୁନ୍ଦର ସ୍ୱାସ୍ଥ୍ୟ, ଅତ୍ୟନ୍ତ ବଳୁଆ । ତା' ସାଙ୍ଗ ଟିବୁଲ୍ ମଧ ଦେଖିବାକୁ ଡେଙ୍ଗା, ଗୋରା ଓ ସ୍ୱାସ୍ଥ୍ୟବାନ୍ । ତାର ଉଜ୍ଜଳ ଆଖି ଦୁଇଟି ଦେଖିଲେ ସେ ଯେ ଅତ୍ୟନ୍ତ ଚାଲାକ୍ ଚତୁର, ଏ କଥା ଯେ କେହି ଜାଣିପାରିବେ ।

ଟିବୁଲ୍‌କୁ ପିଲାଏ ଭାରୀ ଭଲ ପାଆନ୍ତି । ସହରସାରା ପିଲାଏ ତାକୁ ଟିବୁଲ୍ ଭାଇ ଡାକନ୍ତି । ବହୁସ୍ଥାନରେ ବୁଲି ବୁଲି ସେ ସରକସ୍ ଦେଖାଏ । ତା' ସରକସ୍ ଦଳ କେବଳ ଟିବୁଲ୍‌ର ଖେଳ ପାଇଁ ବେଶୀ ନାଁ କରିଥାଏ । ଲମ୍ବା ଦଉଡ଼ି କିମ୍ବା ଲମ୍ବା ତାର ଉପରେ ଚାଲି ଚାଲି ସେ ବହୁତ ମଜା ଖେଳ ଦେଖାଇ ପିଲା ବଡ଼ ସମସ୍ତଙ୍କୁ ଅବାକ୍ କରେ ।

ସେଇ ଟିବୁଲ୍ ଜିଦ୍ କରୁଛି, ପ୍ରସ୍ପେରୋ ଯାଉ ବା ନ ଯାଉ, ସେ ଯେମିତିହେଲେ ତିନି ମୋଟା ଲୋକଙ୍କ ଉଆସ ଭିତରେ ପଶିବ । ଜଗୁଆଳମାନେ ବାଧାଦେଲେ ବି ମାନିବନାହିଁ । କୋଠା, ବାଡ଼ ଡେଇଁ ସିଧା ଚାଲିଯିବ ତାଙ୍କ ରହିବା ଘରକୁ । ସେଠାରୁ ଫେରିଲେ ସବୁ ମଜା କଥା ସେ ସମସ୍ତଙ୍କୁ ଶୁଣାଇବ ।

ପ୍ରସ୍ପେରୋ, ଟିବୁଲ୍ ବସି ବସି ବହୁରାତି ପର୍ଯ୍ୟନ୍ତ ଏ ବିଷୟରେ କଥାବାର୍ତ୍ତା କଲେ । ସେ ଦିନ କାହାରି ଆଖିରେ ନିଦ ନାହିଁ । ଯେ ଏକଥା ଶୁଣୁଛି ଆଶ୍ଚର୍ଯ୍ୟ ହୋଇ ପଚାରୁଛି, ''ଏ କଥା କଣ ସତ ? ସତେ କଣ ସେମାନେ ଯାଇପାରିବେ ?'' କୁନି କୁନି ପିଲାମାନେ ମା' କୋଳରେ ବସି ପ୍ରସ୍ପେରୋ ଓ ଟିବୁଲଙ୍କ ସାହସ କଥା ଶୁଣୁଛନ୍ତି । ସମସ୍ତଙ୍କ ମନରେ ଡର ଓ ଆତଙ୍କ – ତିନି ମୋଟା ଲୋକ ଯଦି ରାଗିଯାଆନ୍ତି, ସେମାନଙ୍କ ଅବସ୍ଥା କ'ଣ ହେବ ? ପିଲାଙ୍କ ମନ ଲାଗିଛି । ସେମାନେ ଭାବୁଛନ୍ତି, ବଢ଼ିଆ ମଜା କଥା । ଦେଖାଯାଉ ପ୍ରସ୍ପେରୋ, ଟିବୁଲ୍ କୋଠା ପାଚିରୀ ଡେଇଁ ଯାଇ-ପାରୁଛନ୍ତି କି ନା ?



ଏ ଖବର ସମସ୍ତେ ଜାଣିସାରିଲେଣି । କିନ୍ତୁ ଏକମାତ୍ର ଜଣେ ଲୋକ ଏ ସବୁ ବିଷୟ କିଛି ହିଁ ଜାଣୁ ନ ଥିଲେ । ସେ ହେଉଛନ୍ତି ଡକ୍ଟର ଗାସ୍‌ପର୍ ଆର୍‌ନେରୀ । ସେ ଜଣେ ବଡ଼ ବୈଜ୍ଞାନିକ । ସେ ବହୁ ପ୍ରକାରର ବିଜ୍ଞାନ ପଢ଼ି ଜ୍ଞାନ ଅର୍ଜନ କରିଥିଲେ । ତାଙ୍କ-ଭଳି ଜଣେ ଶିକ୍ଷିତ ମହାଜ୍ଞାନୀ ସାରା ଦେଶରେ ପାଇବା ଅସମ୍ଭବ ଥିଲା । ତେଣୁ ତାଙ୍କୁ ସମସ୍ତେ ଅତ୍ୟନ୍ତ ସମ୍ମାନ ଦେଉଥିଲେ । ଏମିତିକି ତିନି ମୋଟା ଲୋକଙ୍କ ମନ୍ତ୍ରୀ-ମାନେ ଓ ଅନ୍ୟାନ୍ୟ ବଡ଼ କର୍ମଚାରୀମାନେ ମଧ ଅତ୍ୟନ୍ତ ଭକ୍ତି ଦେଖାଉଥିଲେ । ପିଲାମାନେ ସ୍କୁଲ୍‌ରେ ତାଙ୍କ

ନାଁରେ ଗୀତ ଗାଆନ୍ତି –

''ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ,
କେଡ଼େ ଚଲାକ୍ ଲୋକ ସିଏ,
ବିଲୁଆ ଭାଇ ଯନ୍ତାରେ ପଡ଼େ,
ପାହାଡ଼ମାନ ଭାଙ୍ଗିଯାଏ,
ଦୂର ଦୂରାନ୍ତ ଗ୍ରହ ନକ୍ଷତ୍ର,
ସବୁଠି ସିଏ ପହଞ୍ଚିଯାଏ ।''



ସେଦିନ ରାତିରେ ଗାସ୍‌ପର୍ ଆର୍‌ନେରୀ ତାଙ୍କର ବିଜ୍ଞାନ ସଂପର୍କୀୟ ପରୀକ୍ଷା ଇତ୍ୟାଦି ନେଇ ବ୍ୟସ୍ତ ରହିଥିବାରୁ କୋଠରୀ ବାହାରେ କ'ଣ ଘଟୁଛି ସେ ବିଷୟରେ କିଛି ହିଁ ଜାଣୁ ନଥିଲେ । ରାତି ପାହିବାରୁ କବାଟ ଖୋଲି ସେ ବାହାରକୁ ବାହାରି ଆସିଲେ । କାରଣ ଦୂରକୁ ଯାଇ ଗୋଟିଏ ପ୍ରକାରର ଘାସ ଓ କିଛି ପତ୍ର ତାଙ୍କୁ ଖୋଜି ଆଣିବାକୁ ପଡ଼ିବ ।



ରାସ୍ତାକୁ ବାହାରି ଆସି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଚାରିଆଡ଼େ ଦଳକୁ ଦଳ ଲୋକ । କିନ୍ତୁ କଥା କ'ଣ ? କାହାରି କଥାରୁ ସେ କିଛି ବୁଝି ପାରିଲେ ନାହିଁ । ପାଖରେ ଦଳେ ଛୁଆ ଖେଳୁଥିଲେ । ସେମାନଙ୍କ ପାଖକୁ ଯାଇ ପଚାରିଲେ, ''ପିଲାଏ, କ'ଣ ହେଉଛି ଏଠାରେ ?'' ପିଲାଏ କହିଲେ, ''ଆଜି ତ ମଜାର ଦିନ । ଦେଖିବ ରୁହ, ପ୍ରସ୍ପେରୋ ଓ ଟିବୁଲ୍ ଯାଇଛନ୍ତି ତିନି ମୋଟା ଲୋକଙ୍କୁ ବାନ୍ଧି ଆଣିବେ ।''

ଏସବୁରୁ କିଛି ବୁଝି ନ ପାରି ଡକ୍ଟର ପୁଣି ଆଗକୁ ଚାଲିଲେ । ଜଣେ ସ୍ତ୍ରୀ ଲୋକ ସିଲ୍‌କ ପୋଷାକ ପିନ୍ଧି ଫୁଲ କିଣୁଥିଲେ । ତାଙ୍କୁ ସେ ପଚାରିଲେ, ''ଦୟାକରି କହିବେ କି, ଏଠାରେ କ'ଣ ଏମିତି ଗଣ୍ଡଗୋଳ ଲାଗିଛି ?'' ସ୍ତ୍ରୀ ଲୋକ ଜଣକ ପ୍ରଥମେ ତାଙ୍କୁ ଆଶ୍ଚର୍ଯ୍ୟରେ ଚାହିଁଲେ । ତା'ପରେ ସବୁ ଘଟଣା କହିଲେ ।

ଡକ୍ଟର ଘଟଣା କ'ଣ ହେଉଛି ଦେଖିବାପାଇଁ ଆଉ ଟିକିଏ ଆଗେଇ ଚାଲିଲେ । ରାସ୍ତାରେ ବହୁତ ଗଣ୍ଡଗୋଳ ଆରମ୍ଭ ହୋଇଗଲାଣି । ପ୍ରସ୍ପେରୋ ଓ ଟିବୁଲ୍



ଅନେକ ବେଳଠାରୁ ଉଆସ ଭିତରକୁ ଚାଲିଯାଇଛନ୍ତି । ସେମାନେ କାହିଁକି ଫେରିଲେନି ଭାବି ଅନେକ ଲୋକ ଉଆସର ଲୁହା ଫାଟକ ଖୋଲି ପଶିଯାଇଥିଲେ । କିଏ ସବୁ ଭିତରୁ ପାଟିଗୋଳ ଶୁଣି ପାଖରେ ଜମାହୋଇ ଦୌଡ଼ାଦୌଡ଼ି କରୁଥିଲେ ।

ହଠାତ୍ ଡକ୍ଟର ଚିତ୍କାର କଲେ, ''ହେଇ ଦେଖ, ପ୍ରଫେସରୋକୁ ସେମାନେ ଧରିନେଉଛନ୍ତି ।''

ସମସ୍ତେ ଚାହିଁଲେ । ସତକୁସତ ପ୍ରଫେସରୋକୁ ଦୌଡ଼ିରେ ବାନ୍ଧି ଘୋଷାରି ଘୋଷାରି ଜଗୁଆଳମାନେ ଆଣୁଥିଲେ । ହଠାତ୍ ଲୋକ ଗହଳି ଭାଙ୍ଗିଦେବାକୁ ସେମାନେ ତୋପ ଫୁଟାଇଲେ ।

ଡକ୍ଟର ଗାସ୍‌ପର୍ ଚେତା ହରାଇ ପଡ଼ିଗଲେ । ତାଙ୍କ ହାତ ବାଡ଼ି, ଚଷମା, ବ୍ୟାଗ୍ ଇତ୍ୟାଦି କୁଆଡ଼େ ଖେଳାଖେଳି ହୋଇ ପଡ଼ିରହିଲା ।



## ଦଶଟି ଫାଶୀ ଖୁଣ୍ଟ

ଅନେକ ସମୟ ପରେ ଡକ୍ଟରଙ୍କର ଚେତା ଫେରିଲା । ଉଠିପଡ଼ି ସେ ନିଜ ଜିନିଷ ଖୋଜିବାରେ ଲାଗିଗଲେ । ଟୋପି ଓ ଚଷମା ଛଡ଼ା ସବୁ ଜିନିଷ ତାଙ୍କୁ ମିଳିଗଲା । ବୁଢ଼ାଲୋକ, ଆଖିକୁ ଚଷମା ବିନା ଏତେ ଭଲ ଦେଖାଯାଉନାହିଁ । ଧୀରେ ଧୀରେ ଉଠି ସେ ଚାଲିଲେ । ବହୁ କଷ୍ଟରେ ରାସ୍ତାରେ ଯାଉଥିବା ଗୋଟିଏ ଖାଲି ଘୋଡ଼ାଗାଡ଼ିକୁ ଡାକି ଡକ୍ଟର ସେଥିରେ କ୍ଳାନ୍ତ ହୋଇ ବସିପଡ଼ିଲେ । ସେତେବେଳକୁ ତାଙ୍କୁ ଭୀଷଣ ଭୋକ ହେଲାଣି । ସେ ଘରକୁ ଫେରିଯିବାକୁ ଚାହିଁଲେ । ଘୋଡ଼ାଗାଡ଼ି ଚାଲିଲା ଆଗକୁ ।

ବାଟରେ ବଢ଼େଇମାନେ ହତିଆର ଧରି ଚାଲୁଥିଲେ । କଥା କ'ଣ ? ସମସ୍ତେ ଘେରି ତାଙ୍କୁ ପଚାରିବାରେ ଲାଗିଲେ । ସେମାନେ ମନ କଷ୍ଟରେ ଉତ୍ତର ଦେଲେ, ''ଆମେ ଯାଉଛୁ ଫାଶୀଖୁଣ୍ଟ ତିଆରି କରିବାକୁ ।''

''ଏଁ ଫାଶୀ ଖୁଣ୍ଟ ???''

''ହଁ, ଦଶଟି ଫାଶୀ ଖୁଣ୍ଟ ସଙ୍ଗେ ସଙ୍ଗେ ତିଆରି

କରିବାକୁ ଆମକୁ ଆଦେଶ ଦିଆଯାଇଛି । ପ୍ରଫେସରୋ ସଙ୍ଗେ ଆଉ କେତେଜଣଙ୍କୁ ମଧ୍ୟ ସେମାନେ ଧରି ନେଇଛନ୍ତି ।''

ବଢ଼େଇମାନେ ଆଗେଇ ଚାଲିଲେ । ଡକ୍ଟରଙ୍କ ଆଖିରେ ଲୁହ ଆସିଲା । ଅନ୍ୟାନ୍ୟ ଲୋକମାନଙ୍କ ମନ ମଧ୍ୟ ଭାରୀ କଷ୍ଟ ହେଲା । ପ୍ରଫେସରୋ, ଟିବୁଲ୍‌ଙ୍କୁ କେତେ ବୁଝାଇଲେ ମଧ୍ୟ ବୁଝିଲେନାହିଁ । ଏତିକିବେଳେ କିଏ ଚିତ୍କାର କରୁଥିଲା, ''ଟିବୁଲ୍‌ଭାଇ ବଞ୍ଚିଯାଇଛି ।''



ଫୁଲ ବିକୁଥିବା ଛୋଟ ଝିଅଟି ଖୁସିରେ ଚିତ୍କାର କରୁଥିଲା ।

''ଏଁ ସତକଥା !'' ସମସ୍ତେ ପଚାରିଉଠିଲେ ।

ଜଣେ ପିଲା କହିଲା, ''ମୁଁ ପରା ନିଜେ ଦେଖିଛି ଟିବୁଲ୍‌ଭାଇ ଗୋଟିଏ ବଡ଼କୋଠା ଉପରେ ଚଢ଼ି ଲୁଚିଗଲା ।''

## ତାରା ଛକ

ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କ ଗାଡ଼ି ଗୋଟାଏ ପୋଲ ଉପରେ ଗଡ଼ି ଚାଲିଲା । ରାସ୍ତାର ଆଲୋକ ସବୁ ତାଙ୍କୁ ଠିକ୍ କ୍ଷୀରପୂର୍ଣ୍ଣ ବଡ଼ କାଚ୍‌ବଲ୍ ଭଳି ଦେଖାଯାଉଥିଲା । ଆକାଶରେ ମେଘସବୁ ଛୋଟ ଛୋଟ ପୋକ ଉଡ଼ିଲାଭଳି ମନେହେଉଥିଲା । ନଈ ପାଣିରେ ସହରର ଛବି ପ୍ରତିଫଳିତ ହୋଇ ଖୁବ୍ ସୁନ୍ଦର ଦେଖା-ଯାଉଥିଲା । ପୋଲିସ୍‌ବାଲାମାନେ ଚାରିଆଡ଼େ ପହରା ଦେଉଥିଲେ । ଗୋଟାଏ ମଦୁଆ ଗୀତ ଗାଇ ଗାଇ ଚାଲିଥିଲା ।

''ବାଃ ବାଃ ଦେଖରେ ମଜା
ପ୍ରଫେସରୋଟା ପାଇଲା ସଜା ।
ମାଙ୍କଡ଼ ପରି ଯନ୍ତାରେ ବସି
ଆଉ ତ ସିଏ ପାରୁନି ଖସି ।''

ଆଗ ଛକରେ ପଶୁମାନେ ଖେଳ ଦେଖାଉଥିଲେ । ବହୁତ ପିଲା, ବଡ଼ ମଣିଷ ଏକାଠିହୋଇ ଖେଳ ଦେଖୁ-ଥିଲେ । ସେହି ଖେଳ ମଝିରେ ଗୋଟିଏ ଜୋକର୍ ବାହାରି ସମସ୍ତଙ୍କୁ ଖୁବ୍ ହସାଇଲା । ତା' ପୋଷାକରେ ସୁନେଲି ଜରିର ତାରାମାନ ଲଗାଯାଇଥାଏ । ଆଲୁଅ ପଡ଼ି ସେସବୁ ସତ ତାରାଠାରୁ ବଳି ଜକ୍‌ଜକ୍ ଦେଖା-ଯାଉଥାଏ । ସେ ବିକୃତ ସ୍ୱରରେ ଗୀତ ବୋଲିବାକୁ ଆରମ୍ଭ କଲା । ପିଲାଏ ହସି ହସି ଗଡ଼ିଗଲେ ।

ଠିକ୍ ଏତିକିବେଳେ ଗୋଟିଏ ମାଙ୍କଡ଼ ଡେଇଁ ଡେଇଁ ଆସିଲା । ସେ ଏଡ଼େ ଜୋରରେ ଡେଇଁପଡ଼ିଲା ଯେ ଦର୍ଶକମଣ୍ଡଳୀରେ ଗୋଟାଏ ମୋଟା ଲୋକର ପାଟି ଉପରେ ତା ହାତଟା ପଡ଼ି ବନ୍ଦହେଇଗଲା । ସେ ଲୋକଟା ଡରରେ ଗଁ-ଗଁ ଚିତ୍କାରକଲା । ଏତିକିବେଳେ

ପଶୁ ଜଗୁଆଳ ଦୁଇଜଣ ଦୌଡ଼ିଆସିଲେ । କିନ୍ତୁ ମାଙ୍କଡ଼ଟା ଜଣକ ମୁଣ୍ଡରୁ ଟୋପିଟା ଛଡ଼େଇ ଡେଇଁ ଡେଇଁ ତା ପଞ୍ଜୁରୀ ଭିତରକୁ ଫେରିଗଲା । ଦର୍ଶକମାନେ ଆହୁରି ଜୋର୍‌ରେ ହସିପକେଇଲେ । ହଠାତ୍ କିଏ ଚିତ୍କାର କଲା, "ଦେଖ . . . ଦେଖ, ନିଆଁ ଲାଗିଛି ।"

"ଏଁ ନିଆଁ ? କାହିଁ ? କେଉଁଠି ?"

"ଟିବୁଲ୍‌କୁ ଧରିନେବେ ବୋଲି ତିନି ମୋଟା ଲୋକଙ୍କ ସୈନ୍ୟମାନେ ସେହି ଚାଳଘରେ ସବୁ ନିଆଁ ଲଗାଇଦେଲେ ।" ସମସ୍ତେ କଥାବାର୍ତ୍ତା କରି ଧାଇଁଗଲେ ନିଆଁ ଦେଖିବାକୁ ।

ସେତେବେଳେକୁ ଡକ୍ଟରଙ୍କ ଗାଡ଼ି ତାରା ଛକରେ ପହଞ୍ଚି ଯାଇଥାଏ । ତାରା ଛକରେ ସବୁଠାରୁ ବଡ଼ ଓ ସୁନ୍ଦର କୋଠାଘର ସବୁ ଥାଏ । ମଝିରେ ଏକବାରକେ ଉଚ୍ଚରେ ଗୋଟିଏ ଉଜ୍ଜ୍ୱଳବତୀ ଜଳୁଥାଏ । ପୃଥିବୀରେ ଥିବା ସମସ୍ତ ରାସ୍ତାବତୀଠାରୁ ଏହା ଉଜ୍ଜ୍ୱଳତମ । ଗୋଟିଏ ବିରାଟ କାଚର ବଲ୍ ଲୁହାତାର ଦ୍ୱାରା ରଖା-ଯାଇଥାଏ । ଏହି ଆଶ୍ଚର୍ଯ୍ୟବତୀକୁ ଲୋକେ 'ତାରା' ବୋଲି କହୁଥିବାରୁ ସେହି ଛକର ନାମ 'ତାରା ଛକ' ଦିଆଯାଇଛି ।

ଡକ୍ଟର ସେହି ସ୍ଥାନରେ ପହଞ୍ଚିଯାଇ ଦେଖିଲେ ଯେ ଟିବୁଲ୍ ଉପରେ ତାରରେ ଚାଲୁଛି । ବଡ଼ ମଣିଷ, ପିଲାମାନେ ଏକ ଲୟରେ ତାକୁ ଚାହିଁ ଦେଖୁଛନ୍ତି । ଏଣେ ସୈନ୍ୟମାନେ ତାଙ୍କ ବଡ଼ ଅଫିସରଙ୍କ ସହିତ ବନ୍ଧୁକ ଧରି ଟିବୁଲ୍‌କୁ କେମିତି ମାରି ଖସେଇ ଦେବେ ସେହି ଚେଷ୍ଟାରେ ଥାଆନ୍ତି । ସମସ୍ତଙ୍କ ମନ ଲାଗିଛି । ଦେଖାଯାଉ ଟିବୁଲ୍ ଜିତୁଛି ନା ହାରୁଛି । କିଏ କିଏ ଚିତ୍କାର କରୁଛନ୍ତି, "ହେଇ, ହେଇ ପଳାଇଲା । ହେଇ ସେ କୋଠା ପାଖରେ ।" ଶହ ଶହ ହାତ ଆଙ୍ଗୁଠି ଟେକି ଦେଖାଉଛନ୍ତି । ପିଲା ବନ୍ଧୁ ସମସ୍ତେ ଚିତ୍କାର କରୁଛନ୍ତି ।

"ସାବାସ୍ ଟିବୁଲ୍, ତୁମେ ନିଶ୍ଚୟ ଜିତିଯିବ ।"

"ସେମିତି ତାରରେ ଚଢ଼ି ପଳେଇଯାଅ ।"

"ମନେ ନାହିଁ ସର୍କସ୍‌ର ଲମ୍ଫ ଦୌଡ଼ିରେ ସମତା ରଖି ତୁମେ କିମିତି ଚାଲିପାର ।"

"ଦେଖୁଛ କେଡ଼େ ମଜାରେ ଚାଲୁଛି ସେ । ନା — ସେ ଜମା ପଡ଼ିବ ନାହିଁ ।

ସୈନ୍ୟମାନେ ଚିତ୍କାର କରିଉଠିଲେ, "ହେ କାହିଁକି ପାଟି କରୁଛ ?" ସମସ୍ତେ ଚୁପ୍ କରିଗଲେ । ଟିବୁଲ୍ ତାରରେ ଝୁଲୁଥିବା ବତୀଟି ପାଖରେ ପହଞ୍ଚି ଯାଇଥାଏ । କିନ୍ତୁ ବତୀଟି ଟପିଯାଇ ତାରରେ ପୁଣି ଚାଲିବାପାଇଁ ନିଶ୍ଚୟ ବହୁତ ଅସୁବିଧା ଲାଗିବ । ବହୁତ କଷ୍ଟରେ କୋଠା ଛାତ ଚଢ଼ି ସେ ଜଗୁଆଳମାନଙ୍କ ଦୃଷ୍ଟିରୁ ନିଜକୁ ବଞ୍ଚାଇଥିଲା । କିନ୍ତୁ ଏଥର ସେ ପାରିବନି ।

ରାସ୍ତା ମଝିରେ ସୁନ୍ଦର ଫୁଲ ବଗିଚା । ତାରି ପାଖରେ କୃତ୍ରିମ ଝରଣା ତିଆରିହୋଇ ସେ ରାସ୍ତାର ସୌନ୍ଦର୍ଯ୍ୟ ଆହୁରି ବଢ଼ାଇ ଦେଇଥାଏ । ସେହି ଝରଣା ଓ ଫୁଲଗଛ ପାଖରେ ଜଣେ ଅଫିସର୍ ତା'ର ବନ୍ଧୁକ ଧରି ଟିବୁଲ୍ ଆଡ଼କୁ ଲକ୍ଷ୍ୟ ରଖିଥାଏ ।

ଟିବୁଲ୍ ଆସ୍ତେ ଆସ୍ତେ ବତୀଟି ଆଡ଼କୁ ଚାଲିଥାଏ । କେତେବେଳେ ଟିକିଏ ପାଦ ଜୋର୍‌ରେ ପକାଉଥାଏ । ଏତିକିବେଳେ ଅଫିସର ଜଣକ ପାଟିକରି ଉଠିଲେ, "ଆଉ ଅଳ୍ପ ସମୟ ମଧ୍ୟରେ ଟିବୁଲ୍‌କୁ ମୁଁ ଗୁଳି କରିବି । ଗୁଳି ତା' ଦେହରେ ବାଜିବାମାତ୍ରକେ ସେ ଝରଣା

ପାଣିରେ ଗଳିପଡ଼ିବ ।''

କିନ୍ତୁ ହଠାତ୍ କେଉଁ ଅଜଣା ସ୍ଥାନରୁ ଗୋଟିଏ ଗୁଳି ଆସି ସେ ଅଫିସରଙ୍କ ଦେହରେ ଫୁଟି ଯିବାରୁ ସେ ନିଜେ ସେଇ ଝରଣା ପାଣିରେ ଗଳିପଡ଼ିଲେ । ବୋଧହୁଏ କିଏ ଜଣେ ମାରିଦେଇ ଲୁଚି ପଳାଇଗଲା ।

ଠିକ୍ ସେହି ସମୟରେ ରାସ୍ତାରୁ ଉଜ୍ଜ୍ୱଳ ବତୀଟି ଲିଭିଗଲା । ଚାରିଆଡ଼େ ଭୀଷଣ ଅନ୍ଧାର ହୋଇଗଲା । ଟିବୁଲ୍ କୁଆଡ଼େ ଗଲା, କେହି ଜାଣିପାରିଲେ ନାହିଁ । ସମସ୍ତେ ନିଜ ନିଜ ଘରକୁ ପଳାଇଗଲେ । ଡକ୍ଟର ମଧ୍ୟ ନିଜ ଘୋଡ଼ାଗାଡ଼ିବାଲାଙ୍କୁ ତାଙ୍କ ଘର ରାସ୍ତାରେ ଚଳେଇ ନେବାକୁ କହିଲେ ।

ଘରେ ପହଞ୍ଚି ତରତର କରି ସେ ଶୋଇବା ଘରକୁ ପଶିଗଲେ । ସେତେବେଳକୁ ରାତ୍ରି ବହୁତ ହୋଇଯାଇ-ଥାଏ । ତାଙ୍କ ଘର ଜଗିଥିବା ବୁଢ଼ୀଟି କହିଲା, ''ଡକ୍ଟର, ତୁମକୁ ଦିନସାରା ଚାହିଁ ଚାହିଁ ସବୁ ଖାଦ୍ୟ ଜିନିଷ ଥଣ୍ଡା ହୋଇଗଲା ।''

ଡକ୍ଟର କହିଲେ, ''ମାଉସୀ, ଏତେ ରାତିରେ ଆଉ ଖାଇବି କ'ଣ ? ଥାଉ, ଭୋକ ମରିଗଲାଣି ।''

ସବୁଦିନେ ଶୋଇବାକୁ ଯିବା ପୂର୍ବରୁ ସେହି ଦିନର ପ୍ରଧାନ ଘଟଣାମାନଙ୍କୁ ସେ ନିଜ ଡାଏରୀରେ ଟିପି ରଖନ୍ତି । ସେ ଦିନ ମଧ୍ୟ ନିଜ ଟେବୁଲ୍ ପାଖରେ ବସି ସେ ଲେଖିବସିଲେ, ''ତିନି ମୋଟା ଲୋକ କେମିତି ଚଳୁଛନ୍ତି ଦେଖିବାପାଇଁ ତାଙ୍କ ଉଆସ ଭିତରକୁ ପ୍ରସ୍ପେରୋ ଓ ଟିବୁଲ୍ ଯାଇଥିଲେ । ପ୍ରସ୍ପେରୋକୁ ତିନି ମୋଟା ଲୋକଙ୍କ ସୈନ୍ୟମାନେ ବାନ୍ଧି ନେଲେ । ଟିବୁଲ୍ ବଞ୍ଚିଗଲା । ଜଣେ କିଏ ସେ ଅଫିସରଙ୍କୁ ବନ୍ଧୁକ ଫୁଟାଇ ମାରିଦେଲା । କିନ୍ତୁ ବିଚରା ଟିବୁଲ୍ ପାଇଁ ମୋ ମନ କଷ୍ଟ ହେଉଛି, ସେ କୁଆଡ଼େ ଗଲା ମୁଁ ଜାଣିପାରିଲି ନାହିଁ ।''

ଏତିକିବେଳେ ଡକ୍ଟର କଲମ ବନ୍ଦକରି ରଖିଛନ୍ତି କି ନାହିଁ ହଠାତ୍ ତାଙ୍କ ପଛରେ ଧଡ୍‌କରି କ'ଣ ଗୋଟାଏ ପଡ଼ିବାଭଳି ଶବ୍ଦ ଶୁଣାଗଲା । ପଛକୁ ଚାହିଁ ସେ ଦେଖନ୍ତି ତ ଛାତ ଚିମିନି ବାଟେ ଗଳି ତଳକୁ ଜଣେ ଡେଙ୍ଗା ଯୁବକ ଓହ୍ଲାଇଲା । ସେ ହେଉଛି ଟିବୁଲ୍ ଯେ କି ତାରରେ ଡେଇଁ ଡେଇଁ ଚାଲୁଥିଲା ।

## ଟୁଟିର କଣ୍ଢେଇ ଓ ବେଲୁନ୍‌ବାଲା

ତା' ପରଦିନ ସହରର ବଡ଼ ଛକରେ ଫାଶୀଖୁଣ୍ଟ ତିଆରି ଚାଲିଥାଏ । ଅନେକ ଲୋକ ସେଠାରେ ଏକତ୍ରିତ ହୋଇ ଏ କାମ ଦେଖୁଥାଆନ୍ତି । ଏତିକିବେଳେ ଗୋଟିଏ ବେଲୁନ୍‌ବାଲା ଗୁଡ଼ାଏ ବେଲୁନ୍ ଧରି ସେଠାରେ ଆସି ପହଞ୍ଚିଲା । ସେ ଭାବିଥିଲା, ସେଠାରେ ଥିବା ପିଲା-ମାନଙ୍କୁ ବେଲୁନ୍ ବିକ୍ରୟ କଲେ ତା'ର ଗୁଡ଼ାଏ ଲାଭ-ହେବ । କିନ୍ତୁ ସେ ସେଠାରେ ପହଞ୍ଚିବା ମାତ୍ରକେ ଗୋଟାଏ ଆଶ୍ଚର୍ଯ୍ୟ ଘଟଣା ଘଟିଗଲା । ପିଲାମାନେ ତା'ର ନାଲି, ନେଳି, ଶାଗୁଆ, ଗୋଲାପି ବେଲୁନ୍ ସବୁକୁ ଲୋଭପୂର୍ଣ୍ଣ ଆଖିରେ ଚାହିଁରହିଥିଲେ । ହଠାତ୍ କୁଆଡୁ ମାଡ଼ିଆସିଲା ଭୟଙ୍କର ପବନ । ବେଲୁନ୍ ସବୁ ଉଡ଼ିବାରେ ଲାଗିଲା । ବିଚରା ବେଲୁନବାଲାଟି ମଧ୍ୟ ଆଖିପିଛୁଡାକେ ଆକାଶକୁ ଉଡ଼ିଗଲା ।

ଭୟରେ ସେ ପାଟିକରିବାକୁ ଲାଗିଲା, ''ରକ୍ଷା-କର, ରକ୍ଷାକର ।'' ପ୍ରତ୍ୟେକେ ନିଜକୁ ରକ୍ଷା କରିବାରେ ବ୍ୟସ୍ତ ରହିଲେ । ତା' କଥା ବା ଭାବୁଛି କିଏ । ପିଲା-ମାନେ ଚିତ୍କାର କଲେ, ''ଦେଖ . . . ଦେଖ, ବେଲୁନ୍-ବାଲା ଉଡ଼ିଯାଉଛି ।''

ସମସ୍ତେ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ । ଏତିକିବେଳେ ସେ ରାସ୍ତାରେ ଜଣେ ବିଚିତ୍ର ପୋଷାକ ପିନ୍ଧିଥିବା ଲୋକ ଆସି ପହଞ୍ଚିଗଲା । ତାର ନା "ଏକ, ଦୁଇ, ତିନି ।" ସେ ଜଣେ ନାଚ ମାଷ୍ଟର । ତା'ର ପୋଷାକ ନାଲି, ନେଳି ରଙ୍ଗର । ତା' ମୁଣ୍ଡରେ ଗୋଟିଏ ଲମ୍ବା ବେଣୀ । ସେ ହାତରେ ଗୋଟିଏ ଛତା ଧରିଥାଏ । ହଠାତ୍ ପବନ ଜୋରରେ ହେବାରୁ ତା'ର ଛତାଟି ଉଡ଼ିଗଲା । ଛତାଟି ଆଣିବାକୁ ସେ ଯେତେ ବିକଳରେ ଦୌଡ଼ିଲା, ଛତାଟି ସେତେ ଘୁଞ୍ଚି ଘୁଞ୍ଚି ପଳାଇଲା ।

ଭଲ ପିଲାମାନେ ଛତାଟି ଗୋଟେଇ ଆଣି 'ଏକ, ଦୁଇ, ତିନ୍'କୁ ଦେଇଦେବାର ଚେଷ୍ଟାକଲେ । ଦୁଷ୍ଟ ପିଲାମାନେ ତାକୁ ସାହାଯ୍ୟ କରିବେ କ'ଣ ଓଲଟି ତାଳିମାରି ହସିଉଠିଲେ । ଏଣେ କ'ଣ ହେଇଛି କି ବେଲୁନବାଲାର ପଟେ ନଡ଼ା ତିଆରି ଜୋତା ଆକାଶରୁ ଉଡ଼ିଆସି ନାଚ ମାଷ୍ଟର୍‌ର ମୁଣ୍ଡରେ ଟୋପି ପରି ଲାଖି ରହିଲା । ଏ ଦୃଶ୍ୟ ବେଶ୍ ମଜାର । ନାଚ ମାଷ୍ଟର ମଣିଷଭଳି ଦେଖାନଯାଇ ଗୋଟାଏ ଗୋରୁ ଭଳି ଦେଖାଗଲା । ତା'ର ଲମ୍ବା ବେଣୀଟା ମଧ ଗାଈ ଲାଞ୍ଜ ଭଳି ଓହଳି ରହିଲା ।

ବହୁତ ଲୋକ ଜମିଗଲେ । ସେଠାରେ ଭୀଷଣ ପାଟିତୁଣ୍ଡ ଚାଲିଲା । ଏତିକିବେଳେ ଦୁଇଜଣ ପୋଲିସ୍-ବାଲା ପହଞ୍ଚି ନାଚ ମାଷ୍ଟରକୁ ସେଠାରୁ ତଡ଼ି ନେଇ-ଗଲେ । କାରଣ ତା'ପାଇଁ ଶାନ୍ତିଶୃଙ୍ଖଳାରେ ବାଧା ସୃଷ୍ଟି ହେଲାବୋଲି ସେମାନେ ଅଭିଯୋଗ କଲେ ।

ବେଲୁନ୍‌ବାଲାଟି ଆକାଶରେ ଉଡ଼ି ଉଡ଼ି ଚାଲିଛି । ତା' ମନରେ ବହୁତ ଚିନ୍ତା, ସେ ତ କେବେ ଏମିତି ଉଡ଼ିପାରେନାହିଁ । ଉଡ଼ି ଉଡ଼ି ବା କୁଆଡ଼େ ଯିବ । ଯଦି କେଉଁଠି ନଈ ସମୁଦ୍ରରେ ପଡ଼ିଯାଏ । "ନାଇଁରେ ବାବା ସେ ପଛକେ ମୋର ଭଲ, କିନ୍ତୁ ଯଦି ତିନି ମୋଟା ଲୋକଙ୍କ ଉଆସରେ ପହଞ୍ଚିଯାଏ, ତେବେ ତ ଆଉ ରକ୍ଷା ନାହିଁ !!" କିନ୍ତୁ ବିଚରାର ଭାଗ୍ୟ ଖରାପ ।

ପବନର ଗତି ବଢ଼ିଲା । ସେ ବେଲୁନ୍ ସବୁକୁ ଧରି ଉପରକୁ ଉଠିବାରେ ଲାଗିଲା । ତା'ପରେ ପବନ ତାକୁ ତିନି ମୋଟା ଲୋକଙ୍କ ଉଆସ ଛାତଆଡ଼େ ଉଡ଼େଇନେଲା । ଧୀରେ ଧୀରେ ବଗିଚା ଉପରେ ଉଡ଼ି ଉଡ଼ି ସେ ଗୋଟାଏ ଝରକା ବାଟଦେଇ ରୋଷେଇଘର ଭିତରକୁ ଉଡ଼ିଗଲା । ସେଠାରେ ତଳେ ଚଟାଣରେ ପବନ ତା'କୁ ପକାଇଦେଇ ଚାଲିଗଲା ।

କିଛି ଦୂରରେ ପୁଝାରୀମାନେ ମିଠେଇ, କେକ୍ ଇତ୍ୟାଦି ତିଆରି କାମରେ ବ୍ୟସ୍ତ ଥିଲେ । କାରଣ ଉଆସରେ ଗୋଟିଏ ବଡ଼ ଭୋଜିର ଆୟୋଜନ ଚାଲିଥିଲା । ବହୁଆଡ଼ୁ ବଡ଼ ବଡ଼ ଲୋକମାନଙ୍କର ଆସିବାର ଥିଲା । ତେଣୁ ଏହି ବିଶେଷ ଭାବରେ ଆୟୋଜନ କରାଯାଉଥିବା ଭୋଜିସଭାପାଇଁ ଗୋଟିଏ ସାନ କୋଠରୀ ଆକାରର 'କେକ୍' ତିଆରି କରିବାପାଇଁ ପୁଝାରୀମାନେ ଲାଗିପଡ଼ିଥିଲେ ।

ହଠାତ୍ ବେଲୁନ୍‌ବାଲାକୁ ଦେଖି ସେମାନଙ୍କର କାମ ବନ୍ଦ ହୋଇଗଲା । ସେ ମଧ ଡରରେ ଆଖିବୁଜି ଗୋଟିଏ ମୂର୍ତ୍ତିଟିଏ ଭଳି ପଡ଼ିରହିଥାଏ ଏବଂ ତା ହାତରେ ବେଲୁନ୍‌ର ସୂତା ସବୁ ସେମିତି ଲାଖିରହିଥାଏ । ତାକୁ ସବୁ ସେ ଜୀବନ ବିକଳରେ ଧରିରଖିଥାଏ । ତା'ର ଚାରିପାଖରେ ବିଭିନ୍ନ ଫଳ, କ୍ରିମ୍, ପାଉଡର୍, ଜାମ୍, କେକ୍‌ରେ ଦେବା ରଙ୍ଗ ଆଦି ଥାଏ । କେକ୍ ତିଆରି ସରିଆସିଥାଏ ।

ଏହି ସମୟରେ ଉପର ମହଲାରୁ ସବୁଠାରୁ ବଡ଼ ପୁଝାରୀ ମାଂସର ବିଭିନ୍ନ ପ୍ରକାର ଖାଦ୍ୟ ତିଆରି କରି-

ସାରି ତଳକୁ ଆସୁଥିଲା । ତା'ର ଉଦ୍ଦେଶ୍ୟ 'କେକ୍'ଟି ସରିଛି କି ନାହିଁ ସେ ଦେଖିବ । ବେଲୁନ୍‌ବାଲା ଉପରେ ତା'ର ଆଖି ପଡ଼ିଗଲା । ସେ କହିଲା, "ଏ ବିଚିତ୍ର ଜିନିଷ କ'ଣ ଏଠାରେ ପଡ଼ିଛି ? ଏ ଜିନିଷଟା ନେଇଯାଅ । କ୍ରିମ୍ ଇତ୍ୟାଦି ଭଲଭାବେ ବୋଳାବୋଳି କରି 'କେକ୍'ରେ ସଜେଇଦିଅ ।"

ବଡ଼ ପୂଝାରୀର ଆଦେଶ ପାଇ କେକ୍ ତିଆରି କରୁଥିବା ପୂଝାରୀମାନେ ତା ମୁହଁ ହାତରେ ଧଳା କ୍ରିମ୍



ବୋଳିବାରେ ଲାଗିଲେ । ସେମାନେ ଭାବୁଥିଲେ ଏ କେକ୍‌ଟା ଦେଖି ମାଲିକମାନେ ବେଶ୍ ପସନ୍ଦ କରିବେ । ହଠାତ୍ ବଡ଼ ପୂଝାରୀ କହିଲା, "ଏ କେକ୍‌ଟା ଅଳ୍ପ ସମୟ ପାଇଁ ଚୁଲିରେ ବସେଇଦେବା କି ?"

ବେଲୁନ୍‌ବାଲାଟି ବିକଳରେ ମନେ ମନେ ଭଗବାନ୍‌ଙ୍କୁ ପ୍ରାର୍ଥନା କରୁଥାଏ । ଏଥର ତା' ମରିବା-ବେଳ ଆସିଗଲା । ଚୁଲିରେ ବସେଇଲେ ଆଉ କ'ଣ ସେ ବଞ୍ଚିବ ? ଏଇୟା ଭାବି ତା' ମନ ଏକବାରକେ ଦୁଃଖ ହେଇଗଲା ।

ତା' ଭାଗ୍ୟକୁ ହଠାତ୍ ଦୁଇଜଣ ରୋଷେଇ ଘରେ କାମ କରୁଥିବା ବାଳକ ବାହାରୁ ଦୌଡ଼ି ଦୌଡ଼ି ଆସିଲେ । ସେମାନେ କହିଲେ ଯେ ଖାଇବା ଘରକୁ କେକ୍‌ଟା ଶୀଘ୍ର ନେଇଯିବାକୁ ତିନି ମୋଟା ଲୋକ ଆଦେଶ ଦେଇଛନ୍ତି ।

ବେଲୁନ୍‌ବାଲା ଭଗବାନ୍‌ଙ୍କୁ ଧନ୍ୟବାଦ ଜଣାଇ ଆଖି ଖୋଲି ସାମାନ୍ୟ ଟିକିଏ ଚାହିଁଦେଲା । ଛଅଜଣ

ଫିକା ନୀଳ ପୋଷାକ ପିନ୍ଧିଥିବା ବାଳକ କେକ୍ ସହ ତାକୁ ଟେକିନେବାପାଇଁ ପ୍ରସ୍ତୁତ ହେଇ ରହିଛନ୍ତି । ତାପରେ ସେମାନେ ତାକୁ ଟେକି ନେଇ ଖାଇବା ଘରେ ପହଞ୍ଚିଲେ ।

ସେଠାରେ ଭାରୀ ହସଖୁସିରେ ଭୋଜି ଚାଲିଥାଏ । କେକ୍‌ଟି ନେଇ ସେମାନେ ଟେବୁଲ ଉପରେ ସଜେଇ ରଖିଦେଲେ । ତିନି ମୋଟା ଲୋକଙ୍କୁ ଦେଖିବ ବୋଲି ବେଲୁନ୍‌ବାଲା ଟିକିଏ ଆଖି ଖୋଲିଦେଲା । ତା'ପରେ ଭୟରେ ତା'ର ଆଖି ବନ୍ଦ ହେଇଗଲା । ସେ ଭାବିଲା, "ବାବାରେ କି ମୋଟା ଏମାନେ ! ଗୋଟାଏ ଗୋଟାଏ ରାକ୍ଷସଭଳିଆ ଦେଖାଯାଉଛନ୍ତି । ଏଡ଼େ ମୋଟାଲୋକ ମୁଁ ତ କୋଉଠି ଆଗରୁ ଦେଖିନି ।"

ଆଶ୍ଚର୍ଯ୍ୟରେ ତା'ର ପାଟି ଖୋଲିଯାଇଥିଲା । କାଳେ କିଏ ଜାଣିପାରିବ ଯେ ସେ ଗୋଟାଏ ଜୀବନ ଥିବା ମଣିଷ, ସେଥିପାଇଁ ସେ ଆସ୍ତେ ପାଟି ବନ୍ଦ କରିଦେଲା ।

ଏତିକିବେଳେ ତିନି ମୋଟା ଲୋକଙ୍କ ଭିତରୁ ଜଣେ ଆଦେଶ ଦେବା ସ୍ୱରରେ କହିଲେ, "ହେ ପୁଝାରୀ, କେକ୍‌ଟା ଏଠିକି ଆଣ । ଏଥର ଆମେ କେକ୍ ଖାଇବା ।"

ଅତିଥିମାନେ ମଧ ଖୁସିରେ ପାଟିକଲେ ହଁ-ହଁ କେକ୍ ଖାଇବା । ବେଲୁନବାଲା ପୁଣି ଡରିଗଲା । ସେ ଭାବିଲା ନା, ଏଥର ମୋ ମୃତ୍ୟୁ ସୁନିଶ୍ଚିତ । ଛୁରୀରେ କେକ୍ କାଟିଲାବେଳେ ଯଦି ମୋ ମୁଣ୍ଡ କାଟିଦିଅନ୍ତି !

ସେମାନେ କଥାବାର୍ତ୍ତା କରୁ କରୁ ହଠାତ୍ ପ୍ରସ୍ପେରୋ କଥା କିଏ ପଚାରିଦେଲା । "ଆଜି ବୋଧହୁଏ ପ୍ରସ୍ପେରୋକୁ ଫାଶୀ ଦିଆହେବ ।" ତିନି ମୋଟା ଲୋକ କହିଲେ, "ନା . . . ନା, ତାକୁ ଏତେ ଶୀଘ୍ର ଫାଶୀ ଦିଆଯାଉନାହିଁ ?" "କାହିଁକି ?" କିଏ ଜଣେ ପଚାରିଲା । ଜଣେ ମୋଟା ଲୋକ କହିଲା, "ପ୍ରଥମେ ତାକୁ ପଚରାଯିବ ସେ କାହିଁକି ଆମ ଉଆସରେ ପଶିବାର ସାହସ କଲା ?" ଆଉ ଜଣେ ମୋଟାଲୋକ କହିଲା, "ହଁ-ହଁ ତା' ଦଳରେ ଆଉ କୋଉ କୋଉ ଲୋକମାନେ ଅଛନ୍ତି, ସେ କଥା ନ କହିବାଯାଏ ଆମେ ତାକୁ ଏମିତି ବନ୍ଦୀ କରି ରଖିଥିବା । ତା'ଠାରୁ ସବୁକଥା ଆଦାୟ କରିସାରିଲେ ତାକୁ ଫାଶୀ ଦିଆଯିବ ।"

ଅତିଥିମାନେ କହିଲେ, "ତାକୁ ଏଠାକୁ ଡାକ ।" ତିନି ମୋଟା ଲୋକ ଜଗୁଆଳମାନଙ୍କୁ ଆଦେଶ ଦେଲେ, "ପ୍ରସ୍ପେରୋକୁ ଏଠାକୁ ନେଇଆସ ।"

ପ୍ରସ୍ପେରୋ ଆସିଲା । ତା'ର ଦୁଇ ହାତ ଲୁହା ଶିକୁଳୀରେ ବନ୍ଧାହୋଇଥାଏ । ତିନି ମୋଟା ଲୋକ ପଚାରିଲେ, "କିରେ, ତୁ ଆମ ଉଆସ ଭିତରେ କାହିଁକି ପଶିଥିଲୁ ?"

ପ୍ରସ୍ପେରୋ କହିଲା, "ଏଠାରେ କ'ଣ ହେଉଛି ତାହା ଦେଖିବାକୁ ।" ଅତିଥିମାନେ କହିଲେ, "ତୁ ମିଛ କହୁଛୁ ।"

ପ୍ରସ୍ପେରୋ କହିଲା, "ନା ମିଛ କାହିଁକି କହିବି ? ତିନି ମୋଟା ଲୋକମାନେ କିପରି ଚଳୁଛନ୍ତି । ତାଙ୍କ ଉଆସ ଭିତରଟା ଦେଖିବାକୁ କେମିତି ? ଏଇସବୁ ଦେଖିବାକୁ ମୁଁ ଆସିଥିଲି ।"

ତିନି ମୋଟା ଲୋକ ଆଦେଶ ଦେଲେ, "ନେଇଯାଅ ଏ ଚୋରକୁ । ସେ ପଶୁଶାଳାରେ ସେମିତି ଲୁହା-ପଞ୍ଜୁରୀରେ ବନ୍ଦ କରି ରଖିଦେବ ।"

ବେଲୁନ୍‌ବାଲା ଆଖିଆଗରେ ସବୁ ଦେଖିଲା । ତା'ପରେ ତା'ର ମନେପଡ଼ିଲା, ଏଥର ସେମାନେ କେକ୍ ଖାଇବାକୁ ଆରମ୍ଭ କରିବେ· ନିଶ୍ଚୟ ।

ପ୍ରଫେସରୋଙ୍କୁ ସେମାନେ ନେଇଗଲେ । ସମସ୍ତେ କେକ୍‌ଆଡ଼େ ଚାହିଁଲେ । ତିନି ମୋଟା ଲୋକଙ୍କୁ ଅତିଥିମାନେ କହିଲେ, "ବାଃ କେକ୍‌ଟା କେଡ଼େ ସୁନ୍ଦର ସଜେଇଛନ୍ତି ?"

ତିନି ମୋଟା ଲୋକ ବେଲୁନ୍ ଦେଖି ହୋ-ହୋ ହୋଇ ହସିଉଠିଲେ । "ହଁ ଏଥର ମୁଣ୍ଡ ପାଖରୁ କାଟି ଖାଇବା ।"

ବେଲୁନ୍‌ବାଲା ଚିତ୍କାର କଲା, "ଓଃ ରକ୍ଷାକର, ରକ୍ଷାକର ।" ଠିକ୍ ସେତିକିବେଳେ ବଡ଼ ଜୋରରେ ଗୋଟିଏ ସାନ ପିଲା କାନ୍ଦିଉଠିଲା । ତେଣୁ ବେଲୁନ୍‌ବାଲାର ପାଟି କାହାକୁ ଶୁଣାଗଲାନାହିଁ ।

ସାନ ପିଲାଟି "ମୋ କଣ୍ଢେଇ", "ମୋ କଣ୍ଢେଇ" କହି କାନ୍ଦୁଥିଲା ।

ପ୍ରଥମ ମୋଟା ଲୋକ ବ୍ୟସ୍ତହୋଇ ପଚାରିଲା, "ଟୁଟି କାହିଁକି କାନ୍ଦୁଛି ?" ଦ୍ୱିତୀୟ ମୋଟା ଲୋକ କହିଲା, "ହଁ, ଏତ ଆମ ଉତ୍ତରାଧିକାରୀ ଟୁଟିର କାନ୍ଦ ।" କ'ଣ ଘଟଣା ଘଟିଲା ଭାବି ସେମାନେ ଏକବାରକେ ଡରିଗଲେ ।

କଥା କ'ଣ ହେଉଛି ବୁଝିବାକୁ ଜଣେ ବଡ଼ ଅଫିସର ଓ ଚାକରମାନେ ଘରର ବାହାର କବାଟଆଡ଼େ ଦୌଡ଼ିଗଲେ । ସବୁ ଲୋକ ବ୍ୟସ୍ତ ହେଇପଡ଼ିଲେ । ଏତିକିବେଳେ ସାନ ପୁଅଟିଏ ତିନି ମୋଟା ଲୋକଙ୍କ ପାଖକୁ ଦୌଡ଼ିଆସି ବଡ଼ ଅବୁଝା ଭାବରେ କାନ୍ଦିବାରେ ଲାଗିଲା । ଯେତେ ବୁଝାଇବାକୁ ଚେଷ୍ଟା କଲେ ମଧ କିଛି ବୁଝିଲାନି ।

ବେଲୁନ୍‌ବାଲା ଭାବିଲା, ସାନ ପିଲାଟିକୁ ବୁଝାଇବାକୁ ଯଦି କେକ୍‌ରୁ ଖଣ୍ଡେ କାଟି ଦିଅନ୍ତି, ତେବେ ମୋ ଅବସ୍ଥା ସରିଲା । ପିଲାଟି କିନ୍ତୁ ଭୁଲ୍‌ରେ ମଧ କେକ୍ ଆଡ଼କୁ ଚାହିଁଲାନି । ସେ ସେମିତି ଗୋଡ଼ ହାତ କଚାଡ଼ି ଜିଦ୍‌କରି କାନ୍ଦିବାରେ ଲାଗିଥାଏ ।

ଟୁଟିର ବୟସ ବାରବର୍ଷ । ତିନି ମୋଟା ଲୋକ ଅତି ପିଲାଦିନୁ ତାକୁ ଆଣି ପାଖରେ ରଖିଛନ୍ତି । କାରଣ ସେମାନଙ୍କର କିଛି ପିଲାପିଲି ନଥିଲେ । ଭବିଷ୍ୟତରେ ଟୁଟି ସେମାନଙ୍କର ଉତ୍ତରାଧିକାରୀ ହେବ । ତେଣୁ ସେଇ ଅନୁସାରେ ପିଲାଦିନୁ ତାକୁ ରାଜପୁତ୍ର ଭଳି ଲାଳନ ପାଳନ କରାଯାଉଥିଲା । ସମସ୍ତଙ୍କର ସେ ବହୁତ ଗେହ୍ଲା ।

ସେ କାନ୍ଦୁଛି । କାନ୍ଦି କାନ୍ଦି କହିଲା, "ସେ ଜଗୁଆଳମାନେ ମୋ କଣ୍ଢେଇର ପେଟରେ ଛୁରା ଭୁଷିଦେଲେ ।"

ପ୍ରଥମ ମୋଟା ଲୋକ ଚିତ୍କାର କରି କହିଲା, "ଏଡ଼େ ସାହସ କାହାର ତୋ କଣ୍ଢେଇର ପୁଣି ପେଟ ଫୁଟାଇଦେଲା !"

ସଙ୍ଗେ ସଙ୍ଗେ ଭୋଜି ବନ୍ଦକରି ଦିଆଗଲା । ଭଦ୍ରଲୋକମାନେ ଅଧା ଖାଇ ଫେରିଗଲେ । ଏମିତିକି ସେ ଦିନର ସମସ୍ତ କାର୍ଯ୍ୟକ୍ରମ ବନ୍ଦ କରିଦିଆଗଲା । ପ୍ରଫେସରୋ ଓ ଅନ୍ୟମାନଙ୍କ ଫାଶୀ ମଧ ବନ୍ଦକରି ଦିଆଗଲା ।

ଭୋଜି ବନ୍ଦହୋଇ ଯିବାରୁ କେକ୍‌ଟା ରୋଷେଇ ଘରକୁ ଫେରିଗଲା । ବେଲୁନ୍‌ବାଲା ବିଚରା କେକ୍ ସହ ପୁଣି ଫେରିଲା ସେହି ପୂର୍ବ ସ୍ଥାନକୁ । ତିନି ମୋଟା ଲୋକ ସେମାନଙ୍କର କର୍ମଚାରୀମାନଙ୍କୁ ନେଇ ବଗିଚାଆଡ଼େ ଚାଲିଗଲେ । ଟୁଟି ସେମାନଙ୍କୁ ସବୁକଥା ବୁଝାଇ କହିବାରେ ଲାଗିଲା ।

"ମୁଁ ଘାସରେ ବସିଥିଲି । ସୂର୍ଯ୍ୟପରାଗ କିପରି ହୁଏ ଏହି ବିଷୟରେ ମାଷ୍ଟ୍ରେ ବୁଝାଇ ଦେଉଥିଲେ । ଏତିକିବେଳେ ଚାରିପାଞ୍ଚଜଣ ଜଗୁଆଳ ସେଇବାଟେ

ଯାଉଥିଲେ . . . ''

ଟୁଟି ଆଉ କିଛି କହିନପାରି ସକ୍‌ସକ୍ ହୋଇ କାନ୍ଦିଉଠିଲା । ତା' ଶିକ୍ଷକ ସବୁକଥା ବୁଝେଇ କହିଲେ ।

''ଜଗୁଆଳମାନେ ଖୁବ୍ ରାଗିଯାଇଥିଲେ । ସେମାନେ କହୁଥିଲେ, ''ଦେଖ ଏ ତିନିଟା ମୋଟା ଘୁଷୁରି କେଡ଼େ ନିଷ୍ଠୁର । ପ୍ରସ୍ପେରୋ ଭଳି ଜଣେ ଭଲ ଲୋକକୁ ଫାଶୀ ଦେଉଛନ୍ତି ! ଏ ସାନ ପିଲାଟିକୁ ମଧ୍ୟ ତାଙ୍କଭଳି ନିଷ୍ଠୁର ହେବାକୁ ଶିକ୍ଷା ଦେଉଛନ୍ତି । ତାକୁ ଜୀବନ୍ତ ମଣିଷ ସଙ୍ଗେ ଖେଳିବାକୁ ନ ଦେଇ ଗୋଟାଏ ବଡ଼ କଣ୍ଢେଇ ସଙ୍ଗେ ଖେଳିବାକୁ ଛାଡ଼ିଛନ୍ତି ।''



ତିନି ମୋଟା ଲୋକ୍ ରାଗରେ ଥରିବାକୁ ଲାଗିଲେ ।

କିଛି ସମୟ ଚୁପ୍‌ଚାପ୍ ବସିବାପରେ ଗୋଟିଏ ସଭା ଡକାଇ ତାଙ୍କର ସବୁ କର୍ମଚାରୀମାନଙ୍କୁ ଡକାଇ ପଠାଇଲେ । ସମସ୍ତଙ୍କର ସେହି ଗୋଟିଏ ଚିନ୍ତା । ''କ'ଣ କରାଯିବ ?'' ଟୁଟି ତଥାପି ଜିଦ୍‌କରି କାନ୍ଦୁଛି । ଏତେ ସୁନ୍ଦର କଣ୍ଢେଇର ସିଲ୍‌କ ପୋଷାକ ଚିରିଯାଇଛି । ପେଟ ଭିତରେ କଣାହୋଇ ସ୍ପ୍ରିଙ୍ଗ୍ ଛିଣ୍ଡିଯାଇଛି । ସେ ଆଉ ନାଚିପାରିବ ନାହିଁ । ଆଖି ମିଟ୍‌ମିଟ୍ କରିପାରୁନି । ଆଉ ଗୋଟିଏ ଭଲ କଣ୍ଢେଇ ଦେବା କଥା କହିଲେ ମଧ୍ୟ ଟୁଟି ବୁଝୁନି । ସେ ଚାହୁଁଛି ସେଇ ଏକା କଣ୍ଢେଇ । କିନ୍ତୁ କିଏ ବା ତାକୁ ସଜାଡ଼ିଦେବ ?

''ମୁଁ ଜାଣେ,'' ଜଣେ ମନ୍ତ୍ରୀ କହିଲେ । ସମସ୍ତେ ବ୍ୟସ୍ତ-ଆଗ୍ରହରେ ପାଟିକରି ଉଠିଲେ, ''କିଏ ? କିଏ ? କାହାକଥା କହୁଛ ?''

ସେ ମନ୍ତ୍ରୀଜଣକ ପୁଣି କହିଲେ, ''ଆପଣମାନେ ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କୁ ଭୁଲିଯାଇଚନ୍ତି କି ?''

ସମସ୍ତେ ଆନନ୍ଦରେ ଚିତ୍କାର କଲେ । ''ହୁର୍‌ରା-ହୁର୍‌ରା ।'' ତା'ପରେ ଏକାଠି ହୋଇ ଗାଇବାରେ ଲାଗିଲେ –

''ଡକ୍ଟର ଗାସ୍‌ପର୍ ଆର୍‌ନେରୀ
କେଡ଼େ ଚାଲାକ୍ ଲୋକ ସିଏ
ବିଜୁଳି ଭାଇ ଯନ୍ତାରେ ପଡ଼େ
ପାହାଡ଼ମାନ ଭାଙ୍ଗିଯାଏ,
ମାଟିରୁ ଉଡ଼ି ଯେ ଆକାଶ ଛୁଏଁ,
ଦୂର ଦୂରାନ୍ତ ଗ୍ରହ-ନକ୍ଷତ୍ର
ସବୁଠି ସିଏ ପହଞ୍ଚିଯାଏ ।''

ସଙ୍ଗେ ସଙ୍ଗେ ଚିଠି ଲେଖାହେଲା –

ଡକ୍‌ଟର୍ ଗାସ୍‌ପର୍ ଆର୍‌ନେରୀ,

ଏ ବଡ଼ ଦରକାରୀ ଚିଠି ବୋଲି ଜାଣିବ । ତିନି ମୋଟା ଲୋକଙ୍କ ରାଜସଭାର କର୍ମଚାରୀମାନେ ତୁମ ପାଖକୁ ଗୋଟିଏ ଭଙ୍ଗା କଣ୍ଢେଇ ପଠାଇଛନ୍ତି । ଏ କଣ୍ଢେଇଟି ସେମାନଙ୍କର ଉତ୍ତରାଧିକାରୀ ଟୁଟିର । ତେଣୁ ଏଇ ରାତିରେ କଣ୍ଢେଇଟି ସଜାଡ଼ି ତୁମେ ନେଇଆସିବ । ଯଦି କଣ୍ଢେଇଟିକୁ ପୂର୍ବଭଳି କରିଦେଇ ପାରିବ, ତେବେ ଯାହା ପୁରସ୍କାର ଚାହିଁବ ତୁମକୁ ଦିଆଯିବ । କିନ୍ତୁ ଯଦି ଏ ଆଦେଶ ଅମାନ୍ୟ କର ତେବେ ତୁମକୁ କଠିନ ଶାସ୍ତି ଦିଆଯିବ ।

ରାଜସଭାର ବଡ଼ କର୍ମଚାରୀଙ୍କ ପାଇଁ ସଙ୍ଗେ ସଙ୍ଗେ ଗୋଟିଏ ସୁନ୍ଦର ଘୋଡ଼ାଗାଡ଼ି ଆସିଲା । ଉଆସର ସବୁଠାରୁ ବଡ଼ କର୍ମଚାରୀ କଣ୍ଢେଇକୁ କୋଳରେ ଧରି ଗାଡ଼ିରେ ବସିଲେ । ଅନ୍ୟ କର୍ମଚାରୀ, ଜଗୁଆଳ କେତେକ ଘୋଡ଼ାରେ ବସି ଗାଡ଼ିର ଦୁଇ ପାଖରେ ଚାଲିଲେ ।

ଟୁଟି ବଡ଼ କଷ୍ଟରେ କାନ୍ଦ ବନ୍ଦକଲା । କାରଣ ତାକୁ କୁହାଗଲା ଯେ ତା' କଣ୍ଢେଇଟି ଖୁବ୍ ସୁନ୍ଦରଭାବେ ମରାମତି ହେଇ ପରଦିନ ସକାଳେ ଆସି ପହଞ୍ଚିବ ।

× × ×

ଏଥର ଦେଖିବା ବେଲୁନ୍‌ବାଲାଟି କୁଆଡ଼େଗଲା । ସେମାନେ ତାକୁ କେକ୍ ସହ ରୋଷେଇଘରକୁ ନେଉଥିବାବେଳେ ହଠାତ୍ ଠିକ୍ ରୋଷେଇଘର ପାଖାପାଖି ଚଟାଣରେ କେତେଗୁଡ଼ିଏ କଦଳୀ ଚୋପା ଉପରେ ଜଣେ ଚାକିରିଆର ଗୋଡ଼ ଖସିଗଲା । ଅନ୍ୟ ଚାକରମାନଙ୍କ ସଙ୍ଗେ ସେ କେକ୍‌ଟିକୁ ଧରିଥିଲା । ସେ ପଡ଼ିଯିବାରୁ ସମତା ନ ରହି ଅନ୍ୟମାନଙ୍କ ହାତରୁ ମଧ କେକ୍‌ଟା ଗଡ଼ିପଡ଼ିଲା ।

ବେଲୁନ୍‌ବାଲା ପଡ଼ି ଯାଉ ଯାଉ ଚିତ୍କାର କଲା "ରକ୍ଷାକର . . .ରକ୍ଷାକର ।" ଗୋଡ଼ ଖସିଯାଇଥିବା ଚାକରଟି ଉପରେ ସେ କେକ୍ ସହ ଗଡ଼ିପଡ଼ିଲା । କଚଡ଼ା ଖାଇ ତା'ର ଆଗରୁ ତ ଗୋଡ଼ ଜଖମ୍ ହୋଇଯାଇଥିଲା, ଏବେ ତା' ଉପରେ ବେଲୁନ୍‌ବାଲା ପଡ଼ିଯିବାରୁ ତା' ଅବସ୍ଥା ଆହୁରି ସାଙ୍ଘାତିକ ହୋଇଗଲା ।

ଛୋଟେଇ ଛୋଟେଇ ସେ ସେଠାରୁ ଉଠି ପଳେଇଗଲା । ରୋଷେଇଘରେ କାମ କରୁଥିବା ବାଳକମାନେ ସେଠାରେ ପହଞ୍ଚି ହସି ହସି ଗଡ଼ିଲେ । କେକ୍‌ଟି ଛିନ୍‌ଛତ୍ର ଭାବରେ ଭାଙ୍ଗି ଏଣେ ତେଣେ ପଡ଼ିଥାଏ । କେତେଗୁଡ଼ା କପ୍, ପ୍ଲେଟ୍, କାଚ୍‌ଗ୍ଲାସ୍ ମଧ ଭାଙ୍ଗି ଚୁନା ହୋଇ ପଡ଼ିଥାଏ । ବେଲୁନ୍‌ବାଲାଟି ତା ଭିତରେ ପଡ଼ି ଅସହାୟ ଭାବରେ ଏଣେତେଣେ ଚାହୁଁଥାଏ । ଏତେ ହଇରାଣ ଭିତରେ ମଧ ତା' ହାତରୁ ବେଲୁନ୍‌ର ସୂତା ଖସିଯାଇ ନଥାଏ । ସେଇ ସବୁକୁ ସେ ଭଲଭାବରେ ଧରିଥାଏ ।

ରୋଷେୟା ବାଳକମାନେ ତାକୁ ଦେଖି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ମଧ ତାଳିମାରି ହସି ହସି ନାଚୁଥିଲେ । ଏତିକିବେଳେ ବେଲୁନ୍‌ବାଲା ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଲା, ଏଇ ସାନ ପିଲାଙ୍କୁ କହିଲେ ସେମାନେ ମତେ ଏଠାରୁ ପଳାଇଯିବାର ବାଟ ବତେଇଦେବେ ନିଶ୍ଚୟ ।

ସାନ ପିଲାମାନେ ଲୋଭିଲା ଦୃଷ୍ଟିରେ ନାଲିନେଳି ବେଲୁନ୍‌ଗୁଡ଼ିକୁ ଚାହିଁ ରହିଥାଆନ୍ତି । ହସ ଏକଦମ୍ ବନ୍ଦ । ବେଲୁନ୍‌ବାଲା ସବୁ ବୁଝିଗଲା । ସେ ପଚାରିଲା, "କ'ଣ ପିଲାଏ, ବେଲୁନ୍ ନେବ ?"

ଏକାଥରକେ ସବୁପିଲାଏ "ହଁ" ମାରିଲେ । ବେଲୁନ୍‌ବାଲା କହିଲା, "ଠିକ୍ ଅଛି । ଏସବୁ ବେଲୁନ୍ ମୁଁ ତୁମ୍ଭମାନଙ୍କୁ ଦେଇଦେବି; କିନ୍ତୁ ଦେଖ, ଏଠାରୁ ବାହାରକୁ

ଚାଲିଯିବାର ବାଟ ମତେ ବତେଇ ଦେବାକୁ ହେବ ।''

ରୋଷେୟା ବାଳକମାନଙ୍କର ମନ ଭାରୀ ଖୁସ୍ । ଏତେ ସୁନ୍ଦର ବେଲୁନ୍‌ଗୁଡ଼ିଏ ମାଗଣାରେ ପାଇଯିବା କିଛି କମ୍ କଥା ନୁହେଁ । କେମିତି ଶୀଘ୍ର ବେଲୁନ୍‌ସବୁ ସେମାନଙ୍କ ହାତକୁ ଆସିବ, ଯା' ଭାବି ସେମାନେ କହିଲେ, ''ଜଲ୍‌ଦି ଆମ ସଙ୍ଗେ ଚାଲିଆସ ।''

ଆଉ ଜଣେ ବାଳକ କହିଲା, ''ଦେଖୁଛ, ବଡ଼ ପୁଝାରୀ ଆସୁଛି ନା କ'ଣ । ତୁମେ ଜଲ୍‌ଦି ପଳାଅ, ବେଲୁନ୍‌ବାଲା ।''

ବେଲୁନ୍‌ବାଲା ଦୌଡ଼ିବାକୁ ଆରମ୍ଭ କଲା । କିନ୍ତୁ ବେଶୀବାଟ ଯିବାକୁ ପଡ଼ିଲାନି । ସେଇ ରୋଷେଇଘର ପାଖରେ ଗୋଟାଏ ବଡ଼ ପିତ୍ତଳ ହାଣ୍ଡି ଥିଲା । ତିନି-ମୋଟା ଲୋକ ଭିତରେ ସବୁଠାରୁ ମୋଟା ଲୋକ ବି ଇଚ୍ଛା କଲେ ସେଥିରେ ଗଳିଯାଇ ପାରିବ ।

ପିଲାମାନେ କହିଲେ, ''ହେଇ ବଡ଼ ପୁଝାରୀର ପାଟି ଶୁଣାଗଲାଣି । ତୁମେ ଜଲ୍‌ଦି ଚାଲିଯାଅ ନଚେତ୍ ଧରାପଡ଼ିଯିବ ।''

ବେଲୁନ୍‌ବାଲା ସୂତାରୁ ଖୋଲି ପ୍ରତି ପିଲାକୁ ବେଲୁନ୍ ଗୋଟିଏ ଗୋଟିଏ ଧରେଇଦେଇ ହାଣ୍ଡି ଭିତରକୁ ଗୋଡ଼ ବଢ଼େଇ ପ୍ରଥମ ପାହାଚ୍ଚରେ ପାଦ ଥୋଇଲା । ତା'ପରେ ଦେଖିଲା, ବହୁତ ପାହାଚ୍ଚ ତଳକୁ ତଳ ପଡ଼ିରହିଛି । ଓଃ ଉଡ଼ିବାଠାରୁ ଅନ୍ତତଃ ଆଉ ବେଶୀ ହଇରାଣ ପଡ଼ିବ ନାହିଁ – ଏଇଯା ଭାବି ସେ ତରତର ହୋଇ ଓହ୍ଲାଇଗଲା ।

ଏଣେ ବିସ୍କୁଟ ତିଆରି କରୁଥିବା ପୁଝାରୀ ତିନିଜଣ ତାଙ୍କ ଝରକାବାଟେ ଚାହିଁ ପାଟିକଲେ, ''କିରେ କ'ଣ ହେଉଛି ସେଠି ? କାହିଁକି ପାଟି କରୁଛ ? ଜଲ୍‌ଦି ଆସ ଏଠାକୁ । କାମ ଅଛି ।''

ସାନ ପିଲାମାନେ ଏମିତି ଡରିଗଲେ ଯେ ତାଙ୍କ ହାତରୁ ବେଲୁନ୍‌ର ସୂତା ଖସିଗଲା ଏବଂ ପବନରେ ବେଲୁନ୍‌ସବୁ ଆକାଶରେ ଉଡ଼ିଗଲା ।

ତା'ପରେ ସେଇ ବାଳକମାନେ ମନ କଷ୍ଟରେ ଦୌଡ଼ି ଦୌଡ଼ି ବଗିଚାରେ ପହଞ୍ଚିଲେ । କିନ୍ତୁ ବେଲୁନ୍‌ମାନଙ୍କୁ ଆଉ ଧରିପାରିଲେ ନାହିଁ । ସେଇଠି କେବଳ ମନଦୁଃଖ ଓ ଆଶ୍ଚର୍ଯ୍ୟରେ ଆକାଶକୁ ଚାହିଁ ଠିଆହେଇ ରହିଲେ । ଉପରକୁ ଚାହିଁବାବେଳେ କେତେ-ବେଳେ ଯେ ସେମାନଙ୍କ ମୁଣ୍ଡର ଧଳାଟୋପି ସବୁ ଘାସରେ ପଡ଼ିଗଲା, ତା' କେହି ଦେଖିପାରିଲେନି ।



ଡକ୍ଟର ଗାସ୍‌ପର୍‌ଙ୍କ କୋଠରୀ ଭିତରେ ଗୋଟାଏ କାଠ ବାକ୍ସ ଉପରେ ଜଣେ ନିଗ୍ରୋ ବସିଛି । ସେ ଗୋଟାଏ ନାଲି ଫୁଲ୍‌ପ୍ୟାଣ୍ଟ, ଗେଞ୍ଜି ପିନ୍ଧିଛି ଏବଂ ଅଚିନ୍ତା ଭାବରେ ବସି ସିଗାରେଟ୍ ଟାଣିବାରେ ଲାଗିଛି ।

ବୁଢ଼ୀ ମାଉସୀ ଡରରେ ଚିତ୍କାର କଲା, ''ଇଲୋ ବୋଉଲୋ ଏଇଟା କିଏ ?'' ତା'ପରେ ସେ ସେଠାରୁ ଦୌଡ଼ି ପଳେଇ ଯିବାକୁ ବସିଲା । ଡକ୍ଟର ତା' ପଛରେ

ପାଟି କରି କରି ଦୌଡ଼ିଲେ, ‘‘ଏ ମାଉସୀ, ଏମିତି ଡରୁଛ କାହିଁକି ? ଓହୋ, କାଲି ରାତିରେ ମୁଁ ତୁମକୁ କହିବାକୁ ଭୁଲିଯାଇଛି, ଆମର ଏ ଅତିଥି ବନ୍ଧୁ ଡେରିରେ ଆସି ପହଞ୍ଚିଲେ । ଶୁଣ, ଯାହା ତ ହେଲା ହେଲା, ଏବେ ଆମପାଇଁ କିଛି ଜଳଖିଆ ତିଆରିକର । ହଁ ପାଉଁରୁଟି ଓ ଅଣ୍ଡାଭଜା କରିବ ।’’

ବୁଢ଼ୀ କହିଲା, ‘‘ମୂଷା ସିନା ପିଠା ଭଲପାଏ, ଏ ନିଗ୍ରୋ ବୋଧହୁଏ ଅଣ୍ଡାଭଜା ଭଲପାଏ ।’’

ଡକ୍ଟର୍ ହସିପକେଇଲେ । ବୁଢ଼ୀର ମନ କିନ୍ତୁ ଭାରୀ କଷ୍ଟ । ସେ ଡରି ଡରି ଚିତ୍କାର କଲାବେଳେ ଯନ୍ତାଟା କେତେବେଳେ ହାତରୁ ପଡ଼ି ଖୋଲିଯାଇଛି । ଶାନ୍ତ ଭାବରେ ବସିଥିବା ବଡ଼ ମୂଷାଟି ଡିଆଁଟାଏ ମାରି ସେଠାରୁ ପଳେଇ ଯାଇଥିଲା ।

ବୁଢ଼ୀ ସେଇ ମନ ଦୁଃଖରେ କାନ୍ଦୁଥିଲା । ତା’ ଆଖିରୁ ଝରୁଥିବା ଲୁହ ସବୁ ଅଣ୍ଡା ପେଣ୍ଟିବାବେଳେ ସେଥିରେ ପଡ଼ିଯିବାରୁ ଅଣ୍ଡାଭଜା ପାଇଁ ଆଉ ଲୁଣ ପକେଇବା ଦରକାର ହେଲାନାହିଁ ।

ନିଗ୍ରୋଟି ଖାଇଲାବେଳେ କହିଲା, ‘‘ମାଉସୀ,



ଅଣ୍ଡାରେ ବେଶୀ ଲୁଣ ଦେଇ ଭଲ କରିଛ । ମତେ ଅଣ୍ଡାଭଜା ଭାରୀ ଭଲଲାଗୁଛି ।''

ଖାଇସାରିବା ପରେ ନିଗ୍ରୋକୁ ନେଇ ଡକ୍ଟର୍ ରାସ୍ତାରେ ବୁଲାବୁଲି କରିବାକୁ ବାହାରିଗଲେ । ରାସ୍ତାରେ ବୁଲିବୁଲି ସେମାନେ କିଛିଦୂର ଯାଇ ଆଉ ଗୋଟାଏ ଛକରେ ପହଞ୍ଚିଲେ । ସେଠାରେ ଥିବା ବଡ଼ ପାଚେରୀଟାରେ ଜଣେ ଲୋକ ଅଠା ଦେଇ କ'ଣ ପୋଷ୍ଟର ମାରିବାରେ ବ୍ୟସ୍ତ ଥିଲା । ପବନରେ କାଗଜଟା ଉଡ଼ି ଉଡ଼ି ତା' ମୁହଁରେ ବାଡ଼େଇ ହେଉଥିଲା । ସତେ ଯେମିତି ଜଣାପଡୁଥିଲା ସେ କାଗଜଟା ପୋଷ୍ଟର ମାରୁଥିବା ଲୋକକୁ ଚଟକଣି ଲଗାଇବାରେ ବ୍ୟସ୍ତ । କିନ୍ତୁ ଶେଷରେ ସେ ବହୁ କଷ୍ଟ ସ୍ୱୀକାର କରି କାଗଜଖଣ୍ଡିକ ଅଠା ଲଗାଇ ସେଠାରେ ମାରିଲା । ତା'ପରେ ଆଉ ବିଡ଼ାଏ ସେମିତି କାଗଜ ନେଇ ସେଠାରୁ ଅନ୍ୟଆଡ଼େ ଚାଲିଲା ।

ଡକ୍ଟର୍ ଓ ତାଙ୍କର ନିଗ୍ରୋବନ୍ଧୁ ସେଥିରେ ଲେଖାହୋଇଥିବା ସମସ୍ତ ବିଷୟ ପଢ଼ିବାକୁ ଚେଷ୍ଟାକଲେ । ସେଥିରେ ଲେଖାଥିଲା, ''ଶୀଘ୍ର ବାହାରି ଆସନ୍ତୁ । ତିନି ମୋଟା ଲୋକଙ୍କ ତରଫରୁ ଆପଣମାନଙ୍କ ପାଇଁ ବିରାଟ ଏକ ମେଳାର ଆୟୋଜନ କରାଯାଇଛି । ବହୁ ପ୍ରକାର ନାଚ୍, ଗୀତ, ହସ, ମଜା ଦେଖି ମନ ଖୁସୀ ହେଇଯିବ । ଚଉଦ ନମ୍ବର ବଜାର ପାଖରେ ଶୀଘ୍ର ପହଞ୍ଚ ଯାଆନ୍ତୁ ।'' ଡକ୍ଟର୍ ଓ ନିଗ୍ରୋବନ୍ଧୁ ମନ ଖୁସିରେ ଚଉଦ ନମ୍ବର ବଜାର ପାଖକୁ ଚାଲିଲେ ।

ସେଠାରେ ମେଳା ପାଇଁ ବିରାଟ ଆୟୋଜନ ଚାଲିଛି । ଲୋକମାନେ ଧୀରେ ଧୀରେ ଏକତ୍ରିତ ହେବାରେ ଲାଗିଛନ୍ତି । ଡକ୍ଟର୍ ଗାସ୍‌ପର୍ ଆଉ ତାଙ୍କର କଳା ବନ୍ଧୁଟି ସେ ଲୋକମାନଙ୍କ ଭିତରେ ଆସି ବସିଲେ । ଏତିକିବେଳେ କିଏ ସବୁ କଥାବାର୍ତ୍ତା କରୁଥିଲେ :

''ଜାଣିଛ, କଚେରୀ ଛକରେ ଆଜି ପ୍ରସ୍ପେରୋ ଓ ଆଉ ନଅଜଣ ଅପରାଧୀଙ୍କୁ ଫାଶୀ ଦିଆଯିବ ।''

ଠିକ୍ ଏତିକିବେଳେ ଖେଳ ଆରମ୍ଭ ହୋଇଗଲା । ଜଣେ ବଳୁଆ ଲୋକ ଲୁହାର ବଡ଼ ଓଜନିଆ ବଲ୍‌ଟିଏ ଧରି ବିଭିନ୍ନ ଖେଳ ଦେଖାଇବାକୁ ଆରମ୍ଭକଲା । ଠିକ୍ ଆରମ୍ଭ କରିବା ପୂର୍ବରୁ ସେ କହିଲା, ''ଭାଇ ଓ ଭଉଣୀମାନେ, ତିନି ମୋଟା ଲୋକ ଠିକ୍ ଏମିତି ପ୍ରସ୍ପେରୋ ଓ ଟିବୁଲ୍‌ର ଖପୁରୀ ଉଡ଼େଇଦେବେ ।''

ଏ କଥା ଶୁଣି ନିଗ୍ରୋ ଜଣକ ଭାରୀ ରାଗିଗଲା । ସେ ମଧ ପେଣ୍ଡାଲ୍ ଉପରକୁ ଉଠିଗଲା । ଲୋକେ ଭାବିଲେ ସେ ବୋଧହୁଏ ଖେଳ ଦେଖାଇବ, ସେଥିପାଇଁ ଆନନ୍ଦରେ ତାଳି ମାରିଲେ ।

ବଳୁଆ ଲୋକଟି ତାକୁ ଦେଖି ଟିକିଏ ବି ଡରିଲାନାହିଁ । ନିଗ୍ରୋ ପଚାରିଲା, ''କଣ କହୁଥିଲୁ ଆଉ ଥରେ କହିଲୁ ।'' ବଳୁଆ ଲୋକଟି ପୂର୍ବପରି ପ୍ରସ୍ପେରୋକ୍ ମାରିବା କଥା କହିଲା ।

ନିଗ୍ରୋଟି ତାକୁ ଖୁବ୍ ଜୋର୍‌ରେ ଠେଲି ଷ୍ଟେଜ୍ ଭିତରକୁ ପଠେଇଦେଲା ।

ଏ ବି ଏକପ୍ରକାର ଖେଳ ଭାବି ଦର୍ଶକମାନେ ଆନନ୍ଦରେ ତାଳି ଦେଲେ । ତାଳି ବନ୍ଦହେବା ପରେ ସେହି କଳା ଲୋକଟି କହିଲା, ''ଭାଇମାନେ, ଦୟାକରି ଟିକିଏ ଶାନ୍ତହେଇ ବସି ମୋ କଥା ଶୁଣନ୍ତୁ । ମୁଁ ଅନ୍ୟ କେହି ନୁହଁ । ମୁଁ ତୁମର ଚିର ପରିଚିତ ଟିବୁଲ୍ ।''

ସମସ୍ତେ ସେମିତି ଚୁପ୍‌କରି ବସିଛନ୍ତି । ଆଶ୍ଚର୍ଯ୍ୟ କଥା, ଏ କଳା ନିଗ୍ରୋଟି ନିଜକୁ ଟିବୁଲ୍ ବୋଲି କାହିଁକି କହୁଛି ?

ଜଣେ ପଚାରିଲା, "କିନ୍ତୁ ତୁମେ କଳା କାହିଁକି ଦିଶୁଛ ?"

ଟିବୁଲ୍ କହିଲା, "ସେ କଥା ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କୁ ପଚାର ।" ଚାରିଆଡ଼େ ଆନନ୍ଦର ସ୍ୱର, "ଟିବୁଲ୍‌ଭାଇ ଜିନ୍ଦାବାଦ୍ । ଟିବୁଲ୍‌ଭାଇ ଜିନ୍ଦାବାଦ୍ ।"

ଡକ୍ଟରଙ୍କୁ ଏସବୁ ଭଲ ଲାଗୁନଥାଏ । ଏତେ କଷ୍ଟକରି ଟିବୁଲ୍‌ର ରଙ୍ଗ ବଦଳାଇ ସେ ନିଗ୍ରୋଟିଏ ଭଳି ତାକୁ କରିଦେଲେ, ଅଥଚ ଏତେ ବଡ଼ ମେଳାରେ ସେ ନିଜକୁ ଚିହ୍ନା ପକେଇଦେଲା ! ଯଦି ତା' ଉପରେ ବିପଦ ପଡ଼େ ?

ହଠାତ୍ କିଏ ଚିତ୍କାର କଲା, "ଟିବୁଲ୍, ଜଲ୍‌ଦି ଦୌଡ଼ି ପଳେଇଯାଅ । ତିନି ମୋଟା ଲୋକଙ୍କ ଅଫିସର୍‌ମାନେ ଗୋଟିଏ ଘୋଡ଼ାଗାଡ଼ିରେ ଏଆଡ଼କୁ ଆସୁଛନ୍ତି । ଜଣେ ବଡ଼ ଅଫିସର୍ ତିନି ମୋଟା ଲୋକଙ୍କ ଉତ୍ତରାଧିକାରୀ ଟୁଟିର କଣ୍ଢେଇଟି କୋଳରେ ଧରି ଗାଡ଼ିରେ ବସିଛନ୍ତି । ସେ ଗାଡ଼ିର ଦୁଇପାଖରେ ଦୁଇଜଣ ଜଗୁଆଳ ଘୋଡ଼ାରେ ବସି ଆସୁଛନ୍ତି । ସେମାନେ ଡକ୍ଟରଙ୍କୁ ଖୋଜୁଛନ୍ତି ।"

ସତକୁ ସତ ଘୋଡ଼ାଗାଡ଼ିଟି ଆସି ପହଞ୍ଚିଗଲା । ଗାଡ଼ି ଭିତରୁ ବଡ଼ ଅଫିସର୍ ଜଣେ କହିଲେ, "ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ କୋଉଠି ରହନ୍ତି କହି-ପାରିବ ?"

ଜଣେ ବୁଢ଼ୀ ଡରରେ ସବୁ ଦିଗକୁ ହାତ ଦେଖା-ଇଲା । ପୁଣି ଥରେ ସେହି ବଡ଼ ଅଫିସର୍ ଜଣକ ପଚାରିଲେ, "ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ କୋଉଠି ରହନ୍ତି ?" ଏଥର ଡକ୍ଟର ନିଜେ ଗମ୍ଭୀର ଭାବରେ ଉତ୍ତର ଦେଲେ, "ମୁଁ ଏଇଠି ଅଛି । କିଏ ମତେ ଖୋଜୁଛ ?"

"ଆପଣ ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ ?"

"ହଁ, ମୁଁ ନିଜେ ।"

ସେମାନେ ଗାଡ଼ିର ଦ୍ୱାର ଖୋଲିଦେଇ କହିଲେ, "ଭିତରକୁ ଆସନ୍ତୁ । ଆପଣଙ୍କ ଘରକୁ ଯାଇ ସମସ୍ତ କଥାବାର୍ତ୍ତା କରିବା ।"

ସେମାନେ ଡକ୍ଟରଙ୍କୁ ନେଇଗଲେ । ଅଳ୍ପ ସମୟ ମଧ୍ୟରେ ଗାଡ଼ିଟା ସେଠାରୁ ଚାଲିଗଲା । ଏତିକିବେଳେ ପରଦା ଖୋଲି ସେ ବଳୁଆ ଲୋକଟି ବାହାରିଆସି ଟିବୁଲ୍‌କୁ ମାଡ଼ ଉଁଚେଇବା ଭଙ୍ଗୀରେ ହାତ ମୁଠା ମୁଠା କରି କହିଲା, "ରହିଥା, ତତେ ଆଜି ତିନି ମୋଟା ଲୋକଙ୍କ ଜଗୁଆଳଙ୍କୁ ଧରେଇ ଦେଉଛି ।"

ଏତିକି କହି ସେ ଦୌଡ଼ି ଆସୁ ଆସୁ ଏଡ଼େ ଜୋରରେ ଝୁଣ୍ଟିକରି ପଡ଼ିଗଲା ଯେ ଗୋଟାଏ ଘର ଭୁଷୁଡ଼ି ପଡ଼ିଲାଭଳି ମନେହେଲା । ତିନି ମୋଟା ଲୋକଙ୍କ ତରଫରୁ ଖେଳ ଦେଖାଇବାକୁ ଆସିଥିବା ଆଉ ଦୁଇତିନିଜଣ ଧାଇଁଗଲେ ତା' ପାଖକୁ । ସେ କିନ୍ତୁ ସେମିତି ଉଠିପଡ଼ି ଛୋଟେଇ ଛୋଟେଇ ଘୋଡ଼ାଗାଡ଼ି ପଛରେ ଧାଇଁବାକୁ ଲାଗିଲା । ସେ ପାଟି କରୁଥାଏ, "ରୁହ, ରୁହ, ଟିବୁଲ୍ ମିଳିଯାଇଛି ।"

ଗାଡ଼ିଟା ଚାଲିଯାଉଥିବାରୁ ତା' କଥା କେହି ଶୁଣିପାରିଲେ ନାହିଁ । ଟିବୁଲ୍ ଭାବିଲା ସେ ଯଦି ସେଠାରେ ରହେ, ସେଇ ବଳୁଆ ଲୋକଟି ତା' ଦଳର ଲୋକ-ମାନଙ୍କ ସାହାଯ୍ୟରେ ତାକୁ ଧରିନେଇପାରେ । ସେଥିପାଇଁ ସେ ଖୁବ୍ ଶୀଘ୍ର ସେ ସ୍ଥାନ ଛାଡ଼ି ପଳାଇ ଗଲା ।

କିଛି ସମୟ ପରେ ସେ ଦେଖିଲା ସେମାନେ ସମସ୍ତେ ତାକୁ ଧରିବାକୁ ଗୋଡ଼େଇଛନ୍ତି । ଏଥର ଟିବୁଲ୍

ଜୋର୍‌ରେ ଦୌଡ଼ିବାକୁ ଲାଗିଲା ।

ସେ ବଲୁଆ ଲୋକଟି ଗୋଟିଏ ପାଗଳା ହାତୀପରି ଧାଇଁଥାଏ । ତା' ପଛରେ ଆଉ ଜଣେ ଲୋକ ଗୋଟିଏ ମୂଷାପରି ଧାଇଁଥାଏ । ତୃତୀୟ ଲୋକଟି ଗୋଟିଏ ଛୋଟା କୁଆପରି ଧୀରେ ଧୀରେ ସବା ପଛରେ ଆସୁଥାଏ ।

ଟିବୁଲ୍ ଏହା ଦେଖି ନ ହସି ରହିପାରିଲା ନାହିଁ । ଦୌଡ଼ୁ ଦୌଡ଼ୁ ସେ ଗୋଟିଏ ପରିବା ବଗିଚାରେ ପହଞ୍ଚିଲା । ଚାରିଆଡ଼େ ବହୁତ ବନ୍ଧାକୋବି, ମଟର ଛୁଇଁ, ଶାଗ, ବିନ୍ ଇତ୍ୟାଦି ଲାଗିଥାଏ । ପବନରେ ଶାଗୁଆ ପତ୍ର ସବୁ ଧୀରେ ହଲୁଥାଏ । ଆକାଶ ପରିଷ୍କାର ଓ ନୀଳ ଦେଖାଯାଉଥାଏ ।

ଟିବୁଲ୍ ସେଇ ଗଛପତ୍ର ମଧ୍ୟରେ ଲୁଚିଗଲା । ଏତିକିବେଳେ ଯୁଦ୍ଧର ଆୟୋଜନ ଚାଲିଲା । ତିନିଜଣ ଆକ୍ରମଣକାରୀ ବାଡ଼ ପାଖରେ ପହଞ୍ଚି ଯାଇଥିଲେ । ବଲୁଆ ଲୋକଟି ଚିତ୍କାର କଲା ।

"ତୁମେ ସେଠାରେ ଲୁଚିଛ କି ନାହିଁ ଜଲ୍‌ଦି କୁହ ।"

ଟିବୁଲ୍ ଉତ୍ତର ଦେଲାନାହିଁ । ତାପରେ ଦ୍ୱିତୀୟ ଲୋକଟି କହିଲା, "ଦେଖୁଛ, ମୋ ପାଖରେ ଗୋଟିଏ ପିସ୍ତଲ୍ ଅଛି ଏବଂ ସମଗ୍ର ରାଜ୍ୟ ମଧ୍ୟରେ ମୁଁ ସମସ୍ତଙ୍କଠାରୁ ଭଲ ଲକ୍ଷ୍ୟକରି ଗୁଳି ଫୁଟାଇପାରେ ।"

ଟିବୁଲ୍ ଭଲ ବନ୍ଧୁକ ମାରିପାରେନା କିମ୍ବା ତା' ପାଖରେ ସେସବୁ କିଛି ହିଁ ନଥିଲା । କିନ୍ତୁ ତା' ହାତ ପାଖରେ ବେଶ୍ ବଡ଼ ବଡ଼ ଗୁଡ଼ାଏ ବନ୍ଧାକୋବି ଥିଲା ।

ଟିବୁଲ୍ ଟିକିଏ ନଇଁପଡ଼ି ସବୁଠାରୁ ଓଜନିଆ ବନ୍ଧାକୋବିଟି ଉଠାଇ ବାଡ଼ ଆଡ଼କୁ ଫୋପାଡ଼ିଲା । ସେହି ବଲୁଆ ଲୋକର ପେଟରେ ଖୁବ୍ ଜୋର୍‌ରେ ସେଇଟା ବାଜିଲା । ତା'ପରେ ଆଉ ଗୋଟିଏ ବନ୍ଧାକୋବି ଦ୍ୱିତୀୟ ଲୋକ ମୁଣ୍ଡରେ ବାଜିଲା । ସେମାନେ 'ବାପଲୋ . . . ମା' ଲୋ' ଚିତ୍କାର କରି ସେଠାରେ ଗଡ଼ିପଡ଼ିଲେ । ପଡ଼ିଯାଇ ଉଠୁ ଉଠୁ ଗୋଟାଏ ସେକେଣ୍ଡ ମଧ୍ୟରେ ତୃତୀୟ ବନ୍ଧାକୋବିଟା ପୁଣି ଯାଇ ଶତ୍ରୁମାନଙ୍କୁ ଆକ୍ରମଣ କଲା ।

ତା'ପରେ ଟିବୁଲ୍ ଗୋଟିଏ ବଡ଼ ବନ୍ଧାକୋବିକୁ ଜୋର୍‌ରେ ଉପାଡ଼ିବାକୁ ଚେଷ୍ଟାକଲା । ଦୁଇହାତ ଲଗାଇ ଚେଷ୍ଟାକଲେ ମଧ୍ୟ ସେ ପାରିଲାନି । ବରଂ ଅତି ଆଶ୍ଚର୍ଯ୍ୟଜନକ ଭାବରେ ବନ୍ଧାକୋବିଟି ତାକୁ ମଣିଷ ସ୍ୱରରେ କଥା କହିବାକୁ ଆରମ୍ଭ କଲା ।

"ମୁଁ ବନ୍ଧାକୋବି ନୁହେଁ : ମୁଁ ଜଣେ ବେଲୁନ୍‌ବାଲା । ତୁମେ ବନ୍ଧାକୋବି ଭାବି ମୋ ମୁଣ୍ଡକୁ ଟାଣୁଛ । ତିନି ମୋଟା ଲୋକଙ୍କ ଉଆସରୁ ମୁଁ ଲୁଚି ପଳେଇଆସିଛି ।"

ଟିବୁଲ୍‌ର ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ । ଗୋଟାଏ ବନ୍ଧାକୋବିର ମୁଣ୍ଡ ପୁଣି କଥା କହୁଛି ମଣିଷ ସ୍ୱରରେ ! ତଳକୁ ନଇଁ ଦେଖେ ତ ସତକୁସତ ବନ୍ଧାକୋବି ନୁହଁ, ମାଟିରେ ମିଶିଗଲାଭଳି ବସିଛି ମଣିଷଟିଏ ।

ତାକୁ ଟଣାଟଣି କରି ସେ ମାଟିରୁ ବାହାର କଲା । ବେଲୁନ୍‌ବାଲା ଟିବୁଲ୍‌କୁ ସବୁ ଘଟଣା କହିବାରେ ଲାଗିଲା । କିପରି ସେମାନେ ତାକୁ କେକ୍ ସଙ୍ଗେ ସଜେଇଥିଲେ, ପୁଣି ରୋଷେୟା ବାଳକମାନଙ୍କୁ ବେଲୁନ୍ ଦେଇ ପିଉଳ ହାଣ୍ଡି ଭିତରେ ଓହ୍ଲେଇ ସେ କିପରି ସୁଡ଼ଙ୍ଗ ରାସ୍ତାରେ ବାହାରକୁ ବାହାରିଆସିଲା ।

"ହେଇ ଦେଖ, ମୋ ବେଲୁନ୍‌ଟିଏ ଆକାଶରେ ଉଡ଼ୁଛି ।" ବେଲୁନ୍‌ବାଲା ଟିବୁଲ୍‌କୁ ଆକାଶକୁ ଚାହିଁବାକୁ

କହିଲା ।

ଏ ପାଖରେ ବାଡ଼ ପାଖରେ ଟିବୁଲ୍‌କୁ ଖୋଜୁଥିବା ତିନି ମୋଟା ଲୋକଙ୍କ ଦଳର ଲୋକମାନେ ହଠାତ୍ ଆକାଶକୁ ଚାହିଁ ବେଲୁନ୍‌ଟିକୁ ମଧ୍ୟ ଦେଖିପକାଇଲେ । ଏତିକିବେଳେ ଦ୍ୱିତୀୟ ଲୋକଟି କହିଲା, "ଦେଖ, ବେଲୁନ୍‌ଟା କେତେ ଉପରେ ଉଡୁଛି । ମୁଁ ଏମିତି ଲକ୍ଷ୍ୟ କରି ପିସ୍ତଲ ଫୁଟାଇବି ଯେ ମୋ ଗୁଳି ସେ ବେଲୁନ୍ ଦେହରେ ନିଶ୍ଚୟ ବାଜିବ । ବାଜି ରଖ, ନିଶ୍ଚୟ ମୋ ଗୁଳି ବେଲୁନ୍‌ରେ ବାଜିବ ।"

ବଙ୍କୁଆ ଲୋକଟି ତାକୁ ଗାଳିଦେବାରେ ଲାଗିଲା, "ବୋକା, ବଦମାସ୍, ଏବେ ଗୁଳି ମାରିବାର ବେଳ-ନୁହେଁ । ବରଂ ଟିବୁଲ୍ କୁଆଡ଼େ ଗଲା ତାକୁ ଖୋଜି ଧରିନେବା ଉଚିତ ।"

ଦ୍ୱିତୀୟ ଲୋକଟି କାହାରି କଥା ନ ଶୁଣି ଗୋଟାକ ପରେ ଗୋଟିଏ ଗୁଳି ଫୁଟାଇଦେଲା ।

ଗୁଳି ଫୁଟିବା ଶବ୍ଦରେ ପାଖ ଘରର ଦୁଇଟା କୁକୁର ଭୁକିଉଠି ଦୌଡ଼ିଲେ ତାଙ୍କ ପଛରେ । ସେମାନେ ସେତିକିବେଳେ ନିଜ ନିଜ ଭିତରେ ବାଡ଼ିଆପିଟା ହେଉଥିଲେ । ହଠାତ୍ କୁକୁର ଭୁକି ଦୌଡ଼ିବା ଦେଖି ସେମାନେ ମଧ୍ୟ ପଡ଼ିଉଠି ଦୌଡ଼ିଲେ ।

ପାଖରେ ଗୋଟିଏ ଛୋଟ ପାହାଡ଼ । ସେ ପାହାଡ଼ ଉପରେ ଏମାନେ ଚଢ଼ିବାମାତ୍ରକେ କୁକୁର ଦୁଇଟା ମଧ୍ୟ ଚଢ଼ିଯାଇ ଦୌଡ଼ିବାରେ ଲାଗିଲେ ।

ଶେଷରେ ଛୋଟେଇ ଛୋଟେଇ ଚାଲୁଥିବା ପଛଲୋକଟାର ମୋଟା ଗୋଡ଼ରୁ ପୁଳାଏ କାମୁଡ଼ି-ଦେଇ କୁକୁରଟିଏ ସନ୍ତୁଷ୍ଟରେ ଚାଲିଆସିଲା । ତା'ର ସାଙ୍ଗ କୁକୁରଟି ମଧ୍ୟ ଆଉ କାମୁଡ଼ିବାର ଚେଷ୍ଟା ନକରି ସେତିକିରେ ସନ୍ତୁଷ୍ଟ ହୋଇ ଭୁକି ଭୁକି ଫେରିଗଲା ।

ଦ୍ୱିତୀୟ ଲୋକଟି ଜୀବନ ବିକଳରେ ଗୋଟିଏ ଗଛ ଉପରକୁ ଚଢ଼ିଯାଇଥିଲା । ସେଠାରେ ସେ ଗୋଟାଏ ବୁଢ଼ା ପେଚା ଭଳି ବସିରହିଥିଲା ।

ବଙ୍କୁଆ ଲୋକଟି ଖେଳ ଦେଖାଇବାକୁ ଆଣିଥିବା କାଗଜ ବକ ଭିତରେ ମୁଣ୍ଡ ଗଳାଇ ଅନ୍ଧ ଭାବରେ କୁକୁର ଆଡ଼କୁ ପିସ୍ତଲ୍ ଫୁଟାଉଥିଲା । କିନ୍ତୁ ସବୁଥର ଲକ୍ଷ୍ୟଭ୍ରଷ୍ଟ ହେଉ ଗୁଳି ସବୁ ଫସଲ କ୍ଷେତରେ ଠିଆ ହୋଇ ଜଗିଥିବା ବାଉଁଶ ଓ ମାଟି ହାଣ୍ଡିର ତିଆରି ମିଛ ମଣିଷ ଦେହରେ ବାଜୁଥିଲା । ଏଣେ ଟିବୁଲ୍ ଓ ବେଲୁନ୍‌ବାଲା କେତେବେଳଠାରୁ ସେ ସ୍ଥାନ ଛାଡ଼ି ଚାଲିଯାଇଥିଲେ ।

× × ×

ସେଦିନ ମେଳାରେ ଟିବୁଲ୍ କହିଲା, "ମୁଁ କାହିଁକି ନିଗ୍ରୋ ଭଳି ଦେଖାଗଲି ସେକଥା ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କୁ ପଚାର ।"

ଡକ୍ଟରଙ୍କୁ ନ ପଚାରିଲେ ମଧ୍ୟ ଯା'ର କାରଣ ଅନୁମାନ କରିହେବ । ତୁମର ମନେଥିବ ସେଦିନ ରାସ୍ତାର ଯୁଦ୍ଧକ୍ଷେତ୍ରରୁ ଟିବୁଲ୍ ନିଜକୁ ବଞ୍ଚାଇ ଡକ୍ଟରଙ୍କ ଘରେ ଲୁଚି ପହଞ୍ଚିଗଲା; କିନ୍ତୁ ତଥାପି ସେ ବିପଦମୁକ୍ତ ନଥିଲା । କାଳେ ଯଦି ଡକ୍ଟରଙ୍କ ପଡ଼ିଶା କିଏ ତାକୁ ଦେଖିପକାଇ ଖୋଜୁଥିବା ଜଗୁଆଳମାନଙ୍କୁ ଖବର ଦେଇଦେବ ! ସେଥିପାଇଁ ଡକ୍ଟର କହିଲେ, "ମୁଁ ତୁମର ଏ ଚେହେରା ବଦଳାଇଦେବି । ତୁମକୁ ଦେଖିଲେ ଟିବୁଲ୍ ବୋଲି କେହି ଚିହ୍ନିପାରିବେ ନାହିଁ ।"

ସେ ତ ବହୁପ୍ରକାରର ବିଜ୍ଞାନ ପଢ଼ିଥିଲେ । ତେଣୁ ସେଇସବୁର ସାହାଯ୍ୟ ନେଇ ତାକୁ ଏକ ଆଫ୍ରିକୀୟ ନିଗ୍ରୋ ଭଳି ସଜାଇଦେଲେ । ସେ ନିଜେ ବହୁପ୍ରକାରର ରଙ୍ଗ ଉଦ୍ଭାବନ କରିଥିଲେ, ଯାହା କି କେହି ଜାଣି ନଥିଲେ ।

ସହଜରେ ଗୋଟିଏ ରଙ୍ଗରୁ ସେ ଅନ୍ୟ ରଙ୍ଗକୁ ବଦଳାଇ ପାରୁଥିଲେ ମଧ୍ୟ । ସେ ଟିବୁଲ୍‌କୁ ଆଉ ଗୋଟିଏ ବୋତଲ ଦେଇ କହିଲେ, ''ଦେଖ, ଯଦି କେବେ ଆବଶ୍ୟକ ପଡ଼େ ଏହି ରଙ୍ଗହୀନ ତରଳ ପଦାର୍ଥଟି ଦେହରେ ବୋଳିହୋଇ ପଡ଼ିଲେ ତୁମ ଚେହେରା ବଦଳିଯାଇ ପୁଣି ପୂର୍ବ ଚେହେରା ଫେରିଆସିବ । କିନ୍ତୁ ଏହାକୁ ସାବଧାନରେ ପାଖରେ ସାଇତି ରଖିବ । ନଚେତ୍ ହଜିଗଲେ ତୁମେ ସେମିତି କଳା ରହିଯିବ ।''

ଏଥର ଆମେ ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କ ପାଖକୁ ପୁଣି ଫେରିଯିବା । ତୁମର ମନେଥିବ, ତାଙ୍କୁ ତିନି ମୋଟା ଲୋକଙ୍କ ଯୁଦ୍ଧ ବିଭାଗୀୟ ବଡ଼ ଅଫିସର ଘୋଡ଼ାଗାଡ଼ିରେ ବସାଇ ତାଙ୍କ ନିଜ ଘରକୁ ନେଇଗଲେ । ସେମାନେ କାହିଁକି ତାଙ୍କ ପାଖକୁ ଆସିଲେ, ତା' ବି ତୁମର ମନେଥିବ । ଟୁଟିର ଭଙ୍ଗା କଣ୍ଢେଇଟି ଧରି ସେମାନେ ଆସିଥିଲେ, ତା' ଛଡ଼ା ତିନି ମୋଟା ଲୋକଙ୍କର ଚିଠି । ଯେମିତି ହେଲେ ରାତିକ ଭିତରେ ଏ କଣ୍ଢେଇ ମରାମତି କରି ଡକ୍ଟର ସକାଳୁ ନେଇ ଉଆସରେ ଦେଇଆସିବେ ।

ପ୍ରଥମେ ଡକ୍ଟର ଭାବିଲେ ଛୋଟ ଝିଅଟି ବୋଧହୁଏ ଅସୁସ୍ଥ ହେଇପଡ଼ିଛି । ସେ କହିଲେ, ''ବିଚରା ପିଲାଟିର କ'ଣ ହେଲା ?''

ଅଫିସରମାନେ କହିଲେ, ''ପିଲାଟିଏ ନୁହଁ, ଏ ଗୋଟିଏ କଣ୍ଢେଇ ।'' ତା'ପରେ ସେମାନେ ଡକ୍ଟରଙ୍କୁ ସେ ଚିଠି ଦେଖାଇ ସବୁକଥା କହିଲେ ।

ଡକ୍ଟର କହିଲେ, ''କଣ୍ଢେଇ ଭିତରେ ଥିବା କଳକବ୍‌ଜା କାମ ବିଷୟ ମୁଁ କିଛି ଜାଣିନାହିଁ । ତଥାପି ନିଶ୍ଚୟ ସଜାଡ଼ିଦେବାକୁ ବହୁତ ଚେଷ୍ଟା କରିବି, କିନ୍ତୁ ଟିକିଏ ବିଳମ୍ବ ହେଇପାରେ ।''

ବଡ଼ ଅଫିସର୍ ଜଣକ କହିଲେ, ''ତିନି ମୋଟା ଲୋକଙ୍କ ଆଦେଶ ଅନୁସାରେ ଆପଣଙ୍କୁ ଏ କାମ କରିବାକୁ ପଡ଼ିବ । ସେମାନଙ୍କର ଏକମାତ୍ର ଉତ୍ତରାଧିକାରୀ ଟୁଟିର ଦୁଃଖ ଏତେ ବେଶୀ ବଢ଼ିଯାଇଛି ଯେ କଣ୍ଢେଇ ମରାମତିର ଟିକିଏ ବିଳମ୍ବ ମଧ୍ୟ ସେମାନେ ସହିବାକୁ ରାଜି ନୁହଁନ୍ତି ।

ଡକ୍ଟର କହିଲେ, ''ଚେଷ୍ଟାକରିବି, ଯାହା ହେବ ।'' ବଡ଼ ଅଫିସର୍ ଜଣକ କହିଲେ, ''ସେସବୁ କଥା ଶୁଣାଯିବନି । ଯେମିତି ହେଲେ କଣ୍ଢେଇଟି ଭଲଭାବେ ମରାମତି କରି ଆସନ୍ତା କାଲି ସକାଳେ ଉଆସରେ ନେଇ ଦେଇଆସିବେ ।''

ଏତିକି କହି ସେମାନେ ଚାଲିଗଲେ । ଡକ୍ଟର୍ କଣ୍ଢେଇଟିକୁ ଚାହିଁ ମନ ଦୁଃଖରେ ବସିରହିଲେ ।

କେଡ଼େ ସୁନ୍ଦର ଗୁଲଗୁଲିଆ ସାନ ଝିଅଟିଏ । ମୁଣ୍ଡର କୁଞ୍ଚୁକୁଞ୍ଚିଆ କେଶରେ ନାଲି ସିଲ୍‌କ ରିବନ୍‌ଟିଏ ଭିଡ଼ାଯାଇଛି । ଦେହର ଦାମିକିଆ ଜରି ପୋଷାକଟି ଚିରିଯାଇଛି । ଫ୍ରକ୍ ଉପର ଦେଇ ପେଟଟି କଣାହୋଇଯାଇଛି । ଦେଖିଲେ ମନେହେଉଛି, ସତେ କି ସେ ଅସୁସ୍ଥ ହେଇ ମୁହଁ ଶୁଖାଇଛି ।

ଡକ୍ଟର ତାକୁ ଉଠାଉଠି କରି ଦେଖିଲେ । ତାଙ୍କର ବିଶ୍ୱାସ ହେଉନଥାଏ ଯେ ସେ ଏ କଣ୍ଢେଇଟିକୁ ସଜାଡ଼ି ପାରିବେ ।

ବୁଢ଼ୀ ମାଉସୀ କେତେବେଳଠାରୁ କବାଟ ଫାଙ୍କରେ ଚାହିଁ ସବୁ ଶୁଣୁଥିଲା । ଶେଷରେ ସେ ଘର ଭିତରକୁ ପଶିଆସିଲା ।

ଡକ୍ଟର ମୁହଁ ଉଠାଇ ଚାହିଁଲେ । ତା'ପରେ

କହିଲେ, ''ମାଉସୀ, ଆଜି ଆଉ ମୂଷା ଧରି ଗଣ୍ଡଗୋଳ କରିବନି । ରୋଷେଇ ବି ଧୀରେ ଧୀରେ କର । ହଁ ଶୁଣ, ରାତିସାରା ଅନିଦ୍ରା ରହି ମତେ ଏ କଣ୍ଢେଇଟି ସଜାଡ଼ିବାକୁ ପଡ଼ିବ । କିଛି ପ୍ରକାର ଶବ୍ଦ ଯେପରି ଘରେ ନ ହୁଏ, ସେଥିପ୍ରତି ତୁମେ ଦୃଷ୍ଟିଦେବ ।''

ବୁଢ଼ୀ ମୁହଁ ଶୁଖାଇ ହଁ ମାରି ସେଠାରୁ ଚାଲିଗଲା । ହେଲେ ଡକ୍ଟରଙ୍କ ଶୁଖିଲା ମୁହଁ ଦେଖି ତା' ମନ ଆଦୌ ଭଲ ନଥାଏ । ନିଜ କୋଠରୀର କବାଟ ଭିତରୁ ବନ୍ଦକରି



ଚୁପ୍‌ଚାପ୍ ନିଜ ଝିଅାରୀକୁ ସେ ଖଣ୍ଡିଏ ଚିଠି ଲେଖିଲା । କାଳେ କଲମ ଶବ୍ଦ ଶୁଣାଯିବ ସେଥିପାଇଁ ସେ ଖୁବ୍ ଆସ୍ତେ ଲେଖିଲା ।

ତେଣେ ଡକ୍ଟର କଣ୍ଢେଇଟିକୁ ଚାହିଁ ଭାବୁଥିଲେ ଯେ ଠିକ୍ ଏମିତି ଝିଅଟିଏ ସେ କୋଉଠି ଦେଖିଛନ୍ତି, କିନ୍ତୁ କୋଉଠି ? ଯେତେ ମନେ ପକାଇଲେ ବି ସେ ଭାବିପାରିଲେନି । ତା'ପରେ ସେ କଣ୍ଢେଇଟି ସଜାଡ଼ିବା ଉଦ୍ଦେଶ୍ୟରେ ହାତରେ ଧରି ଦେଖିବାରେ ଲାଗିଲେ ।

ଯା' ଭିତରେ କେତେ ସମୟ ବିତିଗଲାଣି । ବୁଢ଼ୀ ଚିଠିଲେଖା କାମସାରି ଅନେକ ସମୟ ବସି ବସି ବିରକ୍ତହୋଇ ଶେଷରେ ଡକ୍ଟରଙ୍କ କଣ୍ଢେଇ ମରାମତି କେତେଦୂର ଗଲା ଦେଖିବାପାଇଁ ଆସିଲା ।

ରାତି ବାରଟା । ବୁଢ଼ୀ ଗୋଡ଼ ଚିପିଚିପି ଆସ୍ତେ ଆସ୍ତେ ଆସୁଥାଏ । କିନ୍ତୁ ଏ କ'ଣ ? କଣ୍ଢେଇଟା ହାତରେ ଧରି ଡକ୍ଟର ବାହାରେ କାହିଁକି ଠିଆ-ହୋଇଛନ୍ତି ? ମୁହଁ ବି ଶୁଖିଯାଇଛି ।

ଡକ୍ଟର କହିଲେ, ''ମୁଁ ତିନି ମୋଟା ଲୋକଙ୍କ ଉଆସକୁ ଯାଉଛି । ଯାହା ଜଣାପଡୁଛି ମୁଁ ସେଠାରୁ ଆଉ ଫେରିବିନାହିଁ ।''

ବୁଢ଼ୀ ଆଶ୍ଚର୍ଯ୍ୟରେ ସେମିତି ଚାହିଁ ରହିଥାଏ । ଡକ୍ଟର କହିଲେ, ''ଟୁଟିର କଣ୍ଢେଇଟି ପୃଥିବୀର ଶ୍ରେଷ୍ଠ କଣ୍ଢେଇ । ତା' ପେଟର ସ୍ପ୍ରିଙ୍ଗ୍ ଛିଣ୍ଡିଯାଇଛି । ମତେ ସେମାନେ କାଲି ସକାଳେ ମରାମତି କରିଦେବାକୁ କହିଛନ୍ତି ।''

''ଆପଣ ଆଉ ଟିକିଏ ଚେଷ୍ଟା କରନ୍ତୁ ସଜାଡ଼ି-ବାକୁ ।'' ବୁଢ଼ୀ କାନ୍ଦ କାନ୍ଦ ହୋଇ କହିଲା ।

''ନା, ସେ ଚେଷ୍ଟା କରି ଲାଭ ନାହିଁ । ମୁଁ ଯା'କୁ ସଜାଡ଼ି ଦେଇପାରେ । କିନ୍ତୁ ଭିତରେ ଭାଙ୍ଗିଯାଇଥିବା ଛୋଟ ଚକଟି ମତେ ତିଆରି କରିବାକୁ ପଡ଼ିବ । ସେ ଧାତୁ ମୋ ପାଖରେ ଅଛି ମଧ୍ୟ । ତେବେ କାମ ଆରମ୍ଭ ପୂର୍ବରୁ ସେଇ କଳକବ୍‌ଜା ସବୁକୁ ଦୁଇଦିନ ରାସାୟନିକ ପଦାର୍ଥରେ ପକାଇ ରଖିବାକୁ ପଡ଼ିବ । କିନ୍ତୁ ମୋ ହାତରେ ଦୁଇଦିନ ସମୟ କାହିଁ ? କାଲି ସକାଳେ କଣ୍ଢେଇଟା ମାଗିଛନ୍ତି ଯେ ସେମାନେ ।''

ଘୋଡ଼ାଗାଡ଼ିଟିଏ ଡକାହୋଇ ଆସିଲା । ଡକ୍ଟର ଗାଡ଼ିରେ ବସିବା ପୂର୍ବରୁ କହିଲେ, ''ଯାଉଛି କଣ୍ଢେଇଟା ଫେରାଇଦେବି । ସେମାନେ ଯଦି ଜେଲ୍ ଦେବା କଥା ଦେବେ ପଛକେ, ମୁଁ କିଛି କରିପାରିବି ନାହିଁ ।'' କଣ୍ଢେଇଟିକୁ ସେ କୋଳରେ ଧରି ବସିଲେ । ଗାଡ଼ିଟି ଧୀରେ ଧୀରେ ଚାଲିଲା ।

## କଣ୍ଢେଇ ହଜିଗଲା

ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ ଘୋଡ଼ାଗାଡ଼ିରେ ବସି ଚାଲିଛନ୍ତି । ପବନ ବଡ଼ ଜୋର୍‌ରେ ବହୁଛି । ତାଙ୍କ କାନରେ ପବନ ବାଜି ଶୀତ ଲାଗୁଛି । ସେ ଦୁଇ ହାତରେ କାନ ବନ୍ଦ କରିଦେଲେ ମଧ୍ୟ ପବନ ତାଙ୍କୁ ଛାଡୁନି । ବାହାରେ ଭାରୀ ଥଣ୍ଡା ପଡ଼ିଛି । ରାଗ ଓ ବିରକ୍ତିରେ ନିଜ ଗରମ ପୋଷାକ ଯେତେ ଭଲଭାବେ ଟଣାଟଣି କରି ପିନ୍ଧିଲେ ମଧ୍ୟ ତାଙ୍କୁ ଭାରୀ ଶୀତ ଲାଗୁଥାଏ ।

ଚାରିଆଡ଼େ ଲୋକମାନେ ଶୋଇଗଲେଣି । କେବଳ କେତୋଟି ଝରକା ଫାଙ୍କରେ ସାମାନ୍ୟ ଆଲୋକ ଦେଖାଯାଉଛି । ଡକ୍ଟରଙ୍କୁ ଏକା ଏକା ଭାରୀ ଖରାପ ଲାଗିଲା । ସେ ଘୋଡ଼ାଗାଡ଼ି ଚାଳକକୁ କହିଲେ, ''ଆହୁରି ଜୋର୍‌ରେ ଚଲା ।''

ରାସ୍ତାର ଗ୍ୟାସ୍ ଆଲୁଅ ସବୁ ନୀଳବତୀ ଜଳିଲା

ଭଳି ଦେଖାଗଲା । ଡକ୍ଟର ଭାବିଲେ ଯେ ସେ ତିନି ମୋଟା ଲୋକଙ୍କ ଉଆସ ପାଖରେ ପହଞ୍ଚି ଯାଇଛନ୍ତି । ଏକଥା ଭାବି ତାଙ୍କୁ ବହୁତ ଡରଲାଗିଲା ।

ଡରମାଡ଼ିବାର ଔଷଧ ହେଉଛି ଭଲଭାବରେ ଘୋଡ଼ିଘାଡ଼ି ହୋଇ ଶୋଇପଡ଼ିବା । ଏଇୟା ଭାବି ଡକ୍ଟର କମଳଟା ଭଲଭାବେ ଘୋଡ଼ିହୋଇ ଶୋଇବାକୁ ଚେଷ୍ଟାକଲେ । ନିଦ ନ ଆସିବାରୁ ସେ ଗୋଟାଏ ବଡ଼ ଦଳ ହାତୀଙ୍କୁ ମନେ ମନେ କଳ୍ପନା କରି ଗଣିବାରେ ଲାଗିଲେ ।

'ଏକ ହାତୀ, ପୁଣି ଏକ ହାତୀ ମିଶିଲେ ଦୁଇ ହାତୀ ହେଲେ, ଦୁଇ ହାତୀରେ ଏକ ହାତୀ ମିଶିଲେ ତିନି ହାତୀ ।' ଏମିତି ଗୁଣୁଗୁଣୁ ହୋଇ ସେ ଗୋଟାଏ ବିରାଟ ଦଳ ହାତୀଙ୍କୁ ଗଣିପକାଇଲେ । ଶେଷକୁ ତାଙ୍କୁ ନିଦ ଆସିଲା । ନିଦରେ ଶୋଇ ଶୋଇ ସେ ସ୍ୱପ୍ନ ଦେଖିଲେ ଯେ ତିନି ମୋଟା ଲୋକ ବିଚାର କରୁଛନ୍ତି । ସେ ଯେତେ ବୁଝାଇଲେ ମଧ୍ୟ ସେମାନେ କିଛି ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ସେମାନେ କହିଲେ, ''ଦେଖ, ତୁମେ ଆମ ଆଦେଶ ମାନିଲନାହିଁ । ଏବେ ଶାସ୍ତି ଭୋଗିବାକୁ ପ୍ରସ୍ତୁତ ହେଇଯାଅ । ତୁମକୁ ଏ କଣ୍ଢେଇ ସହ ଗୋଟିଏ ବଡ଼ ଦୌଡ଼ିରେ ବାନ୍ଧି ତାରାଛକରେ ଘୋଷରା ହୋଇ ଟଣାଯିବ । କିନ୍ତୁ ତା' ପୂର୍ବରୁ ତୁମେ ତୁମ ଚଷମା ଖୋଲିଦିଅ ।''

ଡକ୍ଟର୍ କହିଲେ, ''ମତେ ଏମିତି ଟାଣି ଟାଣି ନେଲେ ମୁଁ ଖଣ୍ଡିଆଖାବରା ହୋଇଯିବି । କିନ୍ତୁ ବିଚରା କଣ୍ଢେଇଟି ଭାଙ୍ଗି ଚୁର୍‌ମାର ହେଇଯିବ ଯେ । ଦେଖ, ଏ କଣ୍ଢେଇଟି ମତେ ଗୋଟିଏ ସତ ଝିଅ ଭଳି ମନେ-ହେଉଛି ଏବଂ ତାକୁ ମୁଁ କୋଉଠି ଦେଖିଛି । ତା' ନାଁଟା ଏବେ ମୋର ମନେ ପଡୁନାହିଁ ।''

ତିନି ମୋଟା ଲୋକ କହିଲେ, ''ନା . . . ନା, ତୁମକୁ କେବେହେଲେ କ୍ଷମା ଦିଆଯିବନାହିଁ । ଏହାହିଁ ତିନି ମୋଟା ଲୋକଙ୍କ ଆଦେଶ ।''

ସେମାନେ ଏଡ଼େ ଜୋର୍‌ରେ ପାଟିକଲେ ଯେ ଡକ୍ଟର୍‌ଙ୍କ ନିଦ ହଠାତ୍ ଭାଙ୍ଗିଗଲା । ସେ ଦେଖିଲେ ସତକୁସତ ତାଙ୍କ ଆଗରେ କିଏ ଜଣେ ଠିଆହୋଇ ଚିତ୍କାର କରୁଛି – ''ଏହାହିଁ ତିନି ମୋଟା ଲୋକଙ୍କ ଆଦେଶ ।''

ଗାଡ଼ି ଆଗକୁ ନ ଚାଲି ଠିଆହୋଇ ରହିଲା । କେତେଗୁଡ଼ିଏ କଳା କଳା ଲୋକ ତାଙ୍କୁ ଘେରିଗଲେ ।

ଡକ୍ଟର୍ କହିଲେ, ''କ'ଣ ଘଟଣା ? କ'ଣ ହେଇଛି ?'' ସେମାନଙ୍କ ମଧ୍ୟରୁ ଜଣେ କହିଲା, ''ଉଆସର ଗୋଟାଏ ମାଇଲ୍ ଦୂରରୁ କେହି ଭିତରକୁ ପଶିପାରିବେନାହିଁ ।'' ଡକ୍ଟର୍ ବୁଝିଲେ ଯେ ସେମାନେ ତିନି ମୋଟା ଲୋକଙ୍କ ବଗିଚା ପାଖରେ ପହଞ୍ଚି-ଯାଇଛନ୍ତି । ସେ ସାହସ ସଞ୍ଚୟ କରି କହିଲେ, ''ମୁଁ ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ ।''

ଏ କଥା ଶୁଣି ସେମାନେ ହସିଉଠିଲେ । ଖଣ୍ଡା ଉଞ୍ଚାଇ କହିଲେ, ''ତୁମେ ମିଛ କହିବାର କେମିତି ସାହସ କରୁଛ ? ଡକ୍ଟର୍ ଗାସ୍‌ପର୍ ଆର୍‌ନେରୀ ଏମିତି ରାତି ଅଧରେ ବୁଲନ୍ତିନାହିଁ । ବିଶେଷକରି ଆଜି ରାତିରେ ସେ ତ ଟୁଟିର କଣ୍ଢେଇ ମରାମତି କରିବାରେ ବ୍ୟସ୍ତ ଥିବେ । କାରଣ ସକାଳ ହେଲେ ନିଶ୍ଚୟ ସେଇଟିକୁ ସେ ନେଇକରି ଆସିବେ ।''

ଡକ୍ଟର୍ କହିଲେ, ''ତୁମମାନଙ୍କୁ ମୁଁ କଣ୍ଢେଇଟି ଏବେ ଦେଖାଉଛି, ନ ଦେଖିବାଯାଏ କେବେହେଲେ ତୁମେ ମୋତେ ବିଶ୍ୱାସ କରିବନାହିଁ ।''

କିନ୍ତୁ କଣ୍ଢେଇଟି କାହିଁ ? ତାକୁ ତ ମୁଁ କୋଳରେ

ଶୁଆଇ ରଖିଥିଲି । ତେବେ କ'ଣ ସେ ଜୀବନ ପାଇ ପଳେଇଗଲା ? ନା ମୁଁ ତଥାପି ସ୍ୱପ୍ନ ଦେଖୁଛି । ଓଃ ମନେପଡ଼ିଲା, ମୁଁ ଯେତେବେଳେ ଶୋଇପଡ଼ିଥିଲି କଣ୍ଢେଇଟା କୋଉଠି ପଡ଼ିଗଲା ବୋଧହୁଏ ।

ଜଗୁଆଳମାନେ ବିରକ୍ତହୋଇ କହିଲେ, "ତୁମେ ଗୋଟାଏ ବୁଢ଼ାଲୋକ ବୋଲି ଆମେ ଛାଡ଼ିଦେଲୁ । ନହେଲେ ଏବେ ଭୟଙ୍କର ଶାସ୍ତି ଭୋଗିବାକୁ ପଡ଼ିଥାନ୍ତା ।"

ଗାଡ଼ିବାଲା ଗାଡ଼ି ବୁଲେଇ ଚାଲିଲା । ଡକ୍ଟର୍ ରାସ୍ତାରେ ଚାରିଆଡ଼େ ଚାହିଁ ଚାହିଁ ଗଲେ । କାଳେ ଯଦି କଣ୍ଢେଇଟା କୋଉଠି ପଡ଼ିଯାଇଥିବ । ଏମିତି ସେ ଆସିଥିବା ବହୁ ରାସ୍ତା ଅତିକ୍ରମ କଲା ପରେ ମଧ କଣ୍ଢେଇଟି କୋଉଠି ମିଳିଲାନାହିଁ ।

ମନ ଦୁଃଖରେ ଡକ୍ଟରଙ୍କର କାନ୍ଦିବାକୁ ଇଛା-ହେଲା । ବେଳେବେଳେ ପାଗଳଙ୍କ ଭଳି ସେ ଚିତ୍କାର କରୁଥିଲେ, "ମୁଁ ଜାଣିଛି, ସେ କଣ୍ଢେଇ ପଳେଇଯାଇଚି ନିଶ୍ଚୟ । ଆଗରୁ ଜାଣିଥିଲେ ମୁଁ ସାବଧାନ ହୋଇଥାଆନ୍ତି ।"

ହଠାତ୍ ଡକ୍ଟରଙ୍କୁ ଭାରି ଭୋକ ହେଲା । ସେ ଚୁପ୍ ହୋଇଗଲେ । ତା'ପରେ ସେ ଗାଡ଼ିବାଲାକୁ କହିଲେ ଗୋଟାଏ ହୋଟେଲ ପାଖରେ ଗାଡ଼ି ରଖିବାକୁ ।

ଗାଡ଼ିବାଲା କହିଲା, "ଏତେ ରାତିରେ କ'ଣ ହୋଟେଲ ଖୋଲାଥିବ !" ସେ ବହୁତ ବୁଝିଲା ପରେ ମଧ କୌଣସି ହୋଟେଲ ଖୋଲା ଥିବାର ଜଣାଗଲା ନାହିଁ । ଭୀଷଣ ଭୋକ । ଡକ୍ଟର୍ ବିକଳରେ ବାହାରର ପ୍ରତ୍ୟେକ ଘରକୁ ଚାହୁଁଥାଆନ୍ତି । କାଳେ ସେ ସବୁ ଯଦି ଧର୍ମଶାଳା କିମ୍ୱା ହୋଟେଲ ହୋଇଥିବ ।

ଭାଗ୍ୟକୁ କିଛିବାଟ ଯିବାପରେ ମାଂସ ଭଜାର ବାସ୍ନା ତାଙ୍କ ନାକରେ ବାଜିଲା । କିଛି ଦୂରରେ ଗୋଟିଏ ଘରଭିତରୁ କ୍ଷୀଣ ଆଲୋକ ରେଖାଟିଏ ରାସ୍ତାକୁ ସାମାନ୍ୟ ଆଲୋକିତ କରୁଥିଲା । ସେଇଟା ଧର୍ମଶାଳା ଭାବି ସେମାନେ ତା' ପାଖକୁ ଚାଲିଲେ ।

ଗୋଟିଏ ବିରାଟ ପଡ଼ିଆରେ କେତୋଟି ଅନ୍ଧାରୁଆ ଘର ପଛରେ ସେ ଘରଟି ଚାରିଗୋଟି ଚକ ଉପରେ ତିଆରି ହୋଇଥିଲା । ଗାଡ଼ିଚାଳକ ତା' ଗାଡ଼ି ରଖି ସେ ଘର କବାଟରେ ଡାକିଲା । କିଏ ଜଣେ ଆସି କବାଟ ଖୋଲି ପଚାରିଲା, "କଣ ଦରକାର ? କାହାକୁ ଖୋଜୁଛ ?"

ଗାଡ଼ିବାଲା କହିଲା, "ଡକ୍ଟର ଗାସ୍‌ପର୍ ଆର୍-ନେରୀ ଆସିଛନ୍ତି, ଏଇଟା କାହାଘର କି ?"

ଲୋକଟି କହିଲା, "ଅଙ୍କଲ୍ ବ୍ରିଜାକ୍‌ଙ୍କ ସର୍କସ୍ ଦଳର ଗାଡ଼ି ଏଇଟା । ଦୟାକରି ଡକ୍ଟରଙ୍କୁ ଭିତରକୁ ଡାକନ୍ତୁ । ତାଙ୍କୁ ଅତିଥିଭାବେ ପାଇ ଆମ୍ଭମାନଙ୍କ ମନ ଭାରି ଖୁସୀ ।"

ଯାହାହେଉ ଅନ୍ଧାରରେ ବହୁଆଡ଼ ବୁଲି ବୁଲି ଶେଷରେ ଡକ୍ଟର ତାଙ୍କର ଗାଡ଼ିଚାଳକ ଓ ଘୋଡ଼ାମାନେ ଖାଇବାକୁ ପାଇଲେ । ବିଶ୍ରାମ ପାଇଲେ ମଧ ।

ସେ ଗାଡ଼ିରେ ଅଙ୍କଲ ବ୍ରିଜାକ୍‌ଙ୍କର ସର୍କସ୍ ଦଳର ସବୁ ଲୋକ ଏକାଠି ରହୁଥିଲେ । ତାଙ୍କ ନାଁ ପୁଣି ସେ ସହରରେ କିଏ ନ ଶୁଣିଛି ? ତାଙ୍କର ଅଦ୍ଭୁତ ଅଭିନେତା ଓ ଅଭିନେତ୍ରୀମାନେ ଖେଳ ଦେଖାଇ ଲୋକଙ୍କ ମନ ଖୁସୀ କରାଇ ପାରୁଥିଲେ । ଟିବୁଲ୍ ମଧ ସେହି ଦଳରେ ଦଉଡ଼ିରେ ଚାଲି ଚାଲି ଭାରୀ ମଜାରେ ସର୍କସ ଦେଖାଏ । ତା'ରି ଖେଳ ପାଇଁ ଅଙ୍କଲ ବ୍ରିଜାକ୍‌ଙ୍କର ସର୍କସ୍ ଦଳ ବେଶୀ ନାଁ କରିଥାଏ । ସ୍କୁଲ ପିଲାଠାରୁ ଆରମ୍ଭ କରି ଦୋକାନୀ, ରାସ୍ତାର ଭିକାରୀ, ସ୍ତ୍ରୀ ଲୋକ ଏମିତିକି

ସୈନ୍ୟମାନେ ମଧ୍ୟ ଟିବୁଲ୍‌କୁ ଦଉଡ଼ି ଉପରେ ଚାଲିବା ଦେଖିଲେ ତାଳି ମାରି ଖୁସିରେ ପାଟିକରନ୍ତି । ସେହି ଟିବୁଲ୍ ନାହିଁ ବୋଲି ସର୍କସ୍ ଗାଡ଼ିର ଲୋକମାନଙ୍କର ମନ ଭାରି କଷ୍ଟ ।

ଡକ୍ଟର୍ କାହାକୁ କିଛି କହୁନଥିଲେ । ସେ ଟିବୁଲ୍‌ର ଖବର କିଛି କହିପାରି ଥାଆନ୍ତେ । ଆଉ ହଜିଯାଇଥିବା ଟୁଟିର କଣ୍ଢେଇ କଥା ମଧ୍ୟ କହିପାରି ଥାଆନ୍ତେ । କାହାକୁ ଏସବୁ ବିଷୟ କିଛି ନ କହି ସର୍କସ୍ ଗାଡ଼ି ଭିତରେ କିପରି ଲୋକମାନେ ରହୁଛନ୍ତି ସେ ଦେଖିବାରେ ଲାଗିଲେ । ପରଦା ଟାଣି ଛୋଟ ଛୋଟ କୋଠରୀ ଭଳି କରାଯାଇଛି । ରାତି ଡେରିହୋଇ ଯାଇଥିଲା । ତେଣୁ ପ୍ରତି କୋଠରୀର ଲୋକମାନେ ଶୋଇପଡ଼ିଥିଲେ । କେବଳ ଜୋକର୍ ସାଜୁଥିବା ଅଗଷ୍ଟ ନାମକ ଲୋକଟିର ସେଦିନ ରୋଷେଇ କରିବା ପାଳିଥିବାରୁ ସେ ଶୋଇ-ନଥିଲା । ତେଣୁ ସେ ଡକ୍ଟରଙ୍କ ଖାଇବା ପିଇବା ଖବର ବୁଝିଲା ।

ଡକ୍ଟର ଗୋଟିଏ ଡ୍ରମ୍ ଉପରେ ବସିଥିଲେ । ପାଖରେଗୋଟିଏ କାଠବାକ୍‌ସ ଉପରେ ତେଲର ଦୀପଟିଏ ଜଳୁଥିଲା । ଚାରିଆଡ଼େ ସର୍କସ୍‌ରେ ବ୍ୟବହାର କରାଯାଉଥିବା ବହୁ ପ୍ରକାରର ମୁଖା, ରଙ୍ଗୀନ ଲୁଗା, ନକଲି ଲମ୍ବା ନାକ, ବଡ଼ ବଡ଼ କାନ ଏମିତି ସବୁ ବହୁ ପ୍ରକାରର ଜିନିଷ ରହିଥାଏ । ଗୋଟିଏ କଣରେ ପଞ୍ଜୁରୀ ଭିତରେ ଅଦ୍ଭୁତ ଜୀବଟିଏ ରଖାଯାଇଥାଏ ।

ବୁଢ଼ା ଜୋକର୍ କହିଲା, ''ଆମେ କାଳେ ଟିବୁଲ୍‌କୁ ଲୁଚେଇ ଦେଇଛୁ ଭାବି ସେ ଜଗୁଆଳମାନେ ଆମକୁ ବହୁତ ଖୋଜୁଥିଲେ । କିନ୍ତୁ ଆମେ ସେତେବେଳକୁ ସେହି ଡରରେ ଯା'ଡ଼େ ପଳାଇ ଆସିଥିଲୁ ।''

ଡକ୍ଟର୍ ତାକୁ କିଛି କହିବେ ବୋଲି ଇଚ୍ଛା କଲେ । ପୁଣି ଆଦୌ ଉତ୍ତର ନଦେଇ ପଞ୍ଜୁରୀରେ ଥିବା ବିରାଡ଼ି ଆକୃତିର ଜୀବଟିକୁ ଚାହିଁବାରେ ଲାଗିଲେ ।

ଜୋକର୍ ପୁଣି କହିଲା, ''ଆପଣ ଗରିବ ଲୋକଙ୍କର ବନ୍ଧୁ ଭଳି । ମନେ ଅଛି, ବହୁତ ଦିନ ତଳେ ଥରେ ଷ୍ଟିଲ୍‌ଲିଭର୍ ବଜାରରେ ଆମେ ସର୍କସ୍ ଦେଖାଉ-ଥାଉ । ମୋ ଝିଅ ଗୋଟାଏ ଗୀତ ବୋଲିଲା . . . ''

ଡକ୍ଟର କହିଲେ, ''ହଁ-ହଁ ମନେପଡ଼ିଲା ।''

ଜୋକର୍ କହିଲା, ''ସେ ଗୋଟିଏ ପିଠା ବିଷୟରେ ଗୀତଟି ଗାଉଥିଲା । ପିଠାଟି ଚୁଲିରେ ଯେପରି ମଜାରେ କରାଯାଏ, ଜଣେ ଖାଇଦେଲେ କିନ୍ତୁ ତାର ମଜାଟା ସରିଯାଏ । ଜଣେ ବୁଢ଼ୀ ଏ ଗୀତଶୁଣି ଭାରି ବିରକ୍ତ ହୋଇଗଲା ଏବଂ ତା' ଚାକରକୁ ଆଦେଶ ଦେଲା ଯେ ମୋ କୁନି ଝିଅର କାନଟାଣି ତା' ପାଖକୁ ନେଇଆସିବାକୁ ।''

ଡକ୍ଟର୍ କହିଲେ, ''ମନେପଡ଼ିଲା । ମୁଁ ସେମାନଙ୍କୁ ସେଠାରୁ ତଡ଼ିଦେଇଥିଲି । ବୁଢ଼ୀ ମତେ ଚିହ୍ନିଥିଲା । ତେଣୁ ତାକୁ ଭାରୀ ଲାଜ ଲାଗିଲା ତା'ର ବ୍ୟବହାର-ପାଇଁ ।''

ଜୋକ୍‌ର୍ କହିଲା, ''ମୋ ସାନଝିଅ କେବେ-ହେଲେ ଆପଣଙ୍କୁ ଭୁଲିପାରିବନି । ସେ କହେ ଯେ ଯଦି ସେଦିନ ସେ ବୁଢ଼ୀର ଚାକର ତା' କାନ ଟାଣି-ଥାଆନ୍ତା, ଲାଜ ଓ ଅସମ୍ମାନରେ ସେ ସରିଯାଇ-ଥାଆନ୍ତା ।''

ଡକ୍ଟର କହିଲେ, ''ତୁମ ସାନ ଝିଅଟି କାହିଁ ?'' ଜୋକ୍‌ର୍‌ଟି କାନ୍‌ଭାସ୍ ପରଦା ସେ ପଟକୁ ଯାଇ କାହାକୁ ବଡ଼ ଅଦ୍ଭୁତ ଭାବରେ ଡାକିଲା — 'ସୁଓକ୍' ।

କେତେ ସମୟପରେ ବାରତେର ବର୍ଷର ଝିଅଟିଏ ପରଦା ଆଢୁଆଳରୁ ଉଙ୍କିମାରି ଚାହିଁଲା । ବଡ଼ ବଡ଼

ପାଉଁଶିଆ ଆଖି ଦୁଇଟିରେ ଆଶ୍ଚର୍ଯ୍ୟ ଭାବ । ମୁଣ୍ଡର କୁଞ୍ଚକୁଞ୍ଚିଆ କେଶରାଶି ସୁନ୍ଦର ମୁହଁଟିର ସୌନ୍ଦର୍ଯ୍ୟକୁ ଆହୁରି ବଢ଼େଇ ଦେଇଥାଏ । ଓଠରେ ଟିକିଏ ଦୁଷ୍ଟାମୀର ହସ ଖେଳାଇ ସେ ପରଦା ଖୋଲି ବାହାରି ଆସିଲା ।

ଡକ୍ଟର ତାକୁ ଚାହିଁ ରହିଲେ । ତାଙ୍କୁ ଜଣାଗଲା ସେ ଟୁଟିର କଣ୍ଢେଇଟିକୁ ହିଁ ଦେଖୁଛନ୍ତି ।

"ହଁ . . . ହଁ – ଏ ତ ସେଇ ।"

କିନ୍ତୁ କିମିତି ଏହା ସମ୍ଭବ ହେଲା । ସତେ କ'ଣ ଏମିତି ଅଦ୍ଭୁତ ଘଟଣା ଘଟିବା ସମ୍ଭବ ? ଦେଖୁଛି ସତକୁସତ ଏ କଣ୍ଢେଇ ମୁଁ ଶୋଇଯିବାବେଳେ ପଳେଇ-ଆସିଛି । ଗୋଟିଏ ଚଗଲୀ ଝିଅଭଳି ଦୌଡ଼ି ଦୌଡ଼ି ପଳେଇଆସିଛି । ଏ ଝିଅ, ତୁ ମତେ ଏମିତି ଚାହିଁ ହସୁଛୁ କ'ଣ ? ତୁ କ'ଣ ଭାବୁଛୁ ତୋ' ସରଳ ହସ ଦେଖିଲେ ମୁଁ ତୋ' ଦୁଷ୍ଟାମୀ ଭୁଲିଯିବି ? ରହ ରହ, ମୁଁ ତତେ ଠିକ୍ ଶାସ୍ତି ଦେଉଛି । ଡକ୍ଟର୍ ଝିଅଟିକୁ ଚାହିଁରହି ମନେ ମନେ ସବୁକଥା କେବଳ ଭାବୁଥିଲେ ।

କଣ୍ଢେଇଟି ଡକ୍ଟରଙ୍କ ଆଡ଼କୁ ଆଶ୍ଚର୍ଯ୍ୟରେ ଚାହିଁ-ରହିଥାଏ । ପୁଣି ବେଳେବେଳେ ଗୋଟିଏ ଠେକୁଆଭଳି ଆଖି ମିଟ୍‌ମିଟ୍ କରୁଥାଏ । କିନ୍ତୁ ସେ ବୁଝିପାରୁନଥିଲା ଯେ ଡକ୍ଟର ତାକୁ ଚାହିଁରହି କ'ଣ ଏତେ ଭାବୁଛନ୍ତି ।

"ଏ, ତୁ କିଏ ସତକରି କହ ।" ଡକ୍ଟର ସବୁକଥା ତାକୁ ରାଗିଯାଇ କହୁଥିଲେ ମଧ୍ୟ ତାଙ୍କ ଓଠରୁ କିଛି ଶବ୍ଦ ବାହାରୁ ନଥିଲା ।

ସେ କଣ୍ଢେଇଟି ତାଙ୍କୁ କହିଲା, "ଦେଖନ୍ତୁ, ଆପଣ ମତେ ଟିକିଏ ବି ମନେରଖି ନାହାନ୍ତି ।"

ଡକ୍ଟର ତା' ଉପରେ ରାଗିବାକୁ ଚାହୁଁଥିଲେ ମଧ୍ୟ ତା'ର ଅତି ସୁନ୍ଦର ଡଉଲ ଡାଉଲ କୁନି ମୁହଁକୁ ଚାହିଁ ରାଗିପାରୁନଥିଲେ । ତା' କଥା ଶୁଣି ସେ କହିଲେ, "ସୁଓକ୍, ତୁ ସେଇ ଟୁଟିର କଣ୍ଢେଇ ନା ?"



ଝିଅଟି କହିଲା, "ମୁଁ ତ କଣ୍ଢେଇ ନୁହଁ, ମୁଁ ଝିଅଟିଏ ।" ଡକ୍ଟର କହିଲେ, "ତୁ ମୋ ସଙ୍ଗେ ଖେଳୁଛୁ କାହିଁକି ?"

ଏଥର କଣ୍ଢେଇଟି ହସି ହସି ପଦାକୁ ବାହାରି-ଆସିଲା । ବତୀର ଆଲୋକରେ ତା' ଚେହେରାଟି ଉଜ୍ଜଳ ଦେଖାଯାଉଥିଲା ।



ଏ କଣ୍ଢେଇ ସେ କଣ୍ଢେଇ ଅପେକ୍ଷା ବେଶୀ ହସଖୁସିର, ସବୁକଥା ମନଦେଇ ଶୁଣୁଛି । ତା' ମନରେ

ଟିକିଏ ବି ଦୁଃଖ ନାହିଁ । ତେବେ ତୁମେସବୁ କହିପାର ସେ ତ ଗୋଟିଏ ଦୁଷ୍ଟପିଲା, ସେ ଯଦି ଏମିତି ଜାଣି

ଜାଣି ହସଖୁସିର ବ୍ୟବହାର କରୁଥିବ ?

କିନ୍ତୁ ମନେପକାଅ, ଟୁଟିର କଣ୍ଢେଇ ଗୋଲାପି ଜରିର ସିଲ୍କ ପୋଷାକ ପିନ୍ଧିଥିଲା, ତା' ଛଡ଼ା ସୁନେଲୀ ଗୋଲାପ ଫୁଲଥିବା ଚଟି ମଧ ତା' ପାଦରେ ନାହିଁ ବରଂ ଏ କଣ୍ଢେଇଟି ଖଣ୍ଡିଏ ସାଧାରଣ ସ୍କର୍ଟ୍ ଓ ବ୍ଲାଉଜ୍ ପିନ୍ଧିଛି । କିନ୍ତୁ ଭାବନାହିଁ ଯେ ସେ ଏମିତି ସାଧାରଣ ପୋଷାକ ପିନ୍ଧି କଣ୍ଢେଇ ଅପେକ୍ଷା କମ୍ ସୁନ୍ଦର ଦେଖା-ଯାଉଛି । ତେବେ ଟୁଟିର କଣ୍ଢେଇ ପେଟରେ ଗୋଟିଏ ବଡ଼କଣା ଥିଲା । କିନ୍ତୁ ଏ କଣ୍ଢେଇ ଯେ ବେଶ୍ ସୁସ୍ଥ-ସବଳ ଡଉଲଡାଉଲ ଝିଅଟିଏ !

ଡକ୍ଟର ଟିକିଏ ଭଲଭାବେ ଚିନ୍ତାକଲେ ସବୁ ବୁଝି-ପାରିଥାଆନ୍ତେ । କିନ୍ତୁ ଭାବିବାପାଇଁ ସେ ଆଉ ସମୟ ପାଇନଥିଲେ ।

ଠିକ୍ ସେଇ ସମୟରେ ବାହାରେ କାହାର ଡାକ ଶୁଣାଗଲା । ତା'ପରେ ଜଣେ ନିଗ୍ରୋ ଭିତରକୁ ପଶି-ଆସିଲା । କଣ୍ଢେଇଟା ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇ-ଗଲା । ପଶୁଟା ମଧ୍ୟ ବୋବେଇଉଠିଲା ।

ଡକ୍ଟର ତାକୁ ଭଲଭାବେ ଚିହ୍ନିଥିଲେ । କିନ୍ତୁ ଅନ୍ୟମାନେ କେହି ତାକୁ ଚିହ୍ନିନଥିଲେ ।

ହଠାତ୍ ନିଗ୍ରୋଟି କଣ୍ଢେଇଟିକୁ ଟିକିଏ ଗେହ୍ଲା-କଲା । କିନ୍ତୁ କଣ୍ଢେଇଟି କିଛି ନ କହି ପରଦା ସେ ପାଖକୁ ପଳେଇଲା । ବୁଢ଼ା ଜୋକର୍ ମଧ ଡରରେ ଆଖି ବୁଜିପକାଇଲା । ହଠାତ୍ ଘରର ବତୀଟା ଲିଭି-ଯିବାରୁ ଘର ଅନ୍ଧାର ହେଇଗଲା । ସମସ୍ତଙ୍କ ଡର ବଢ଼ିଗଲା ।

କିନ୍ତୁ ବାହାର ଆଲୋକ ଆସିବାରୁ ସମସ୍ତେ ଜାଣିପାରିଲେ ଯେ ସକାଳ ହୋଇଆସୁଛି ।

ଡକ୍ଟର କହିଲେ, ''ସକାଳ ହେଲାଣି, ମୁଁ ଏଥର ତିନି ମୋଟା ଲୋକଙ୍କ ଭଆସକୁ ଯିବି ।''

ଟିବୁଲ୍ ଡକ୍ଟରଙ୍କୁ ସବୁ ବିଷୟ ପଚାରିଲା ଏବଂ ସେ ସବୁକଥା ଗୋଟିଗୋଟି କରି କହିଲେ । ଶେଷରେ ଯା' ମଧ କହିଲେ ଯେ ଟୁଟିର ହଜିଯାଇଥିବା କଣ୍ଢେଇଟି ଭୁଲ୍‌ରେ ଏ ସର୍କସ୍ ଗାଡ଼ି ଭିତରକୁ ଚାଲିଆସିଛି ।

କଣ୍ଢେଇଟି ସେ ପାଖରେ ଥାଇ ସବୁକଥା ଶୁଣୁଥିଲା । ହେଲେ କିଛି ବୁଝିପାରୁ ନଥିଲା । ଏତିକି-ବେଳେ ଟିବୁଲ୍ ସଙ୍ଗେ ଡକ୍ଟର କଥାବାର୍ତ୍ତା କରିବା-ବେଳେ ସେହି ନାଁଟା ବାରମ୍ବାର ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲା ଏବଂ ପରଦା ଫାଙ୍କରେ ଚାହିଁ ଦେଖିଲା ଯେ ନିଗ୍ରୋଟି ତା'ର ପକେଟରୁ ଛୋଟ ବୋତଲଟିଏ କାଢ଼ି ଦେହରେ ଲଗାଇ ପକାଉଛି । କିଛି ସମୟ ମଧରେ ଏକ ଅଦ୍ଭୁତ ଘଟଣା ଘଟିଗଲା । ନିଗ୍ରୋଟିର କଳାରଙ୍ଗ ଧୀରେ ଧୀରେ ଲିଭିଯାଇ ସେ ଗୋରା ହୋଇଗଲା ।

'ଟିବୁଲ୍' ବୋଲି ଚିତ୍କାର କରି କଣ୍ଢେଇଟି ପରଦା ପଛରୁ ଧାଇଁଆସିଲା ।

''ଇସ୍, ତୁମେ କେତେ କଳା ଦେଖାଯାଉଥିଲ, ମୁଁ ତୁମକୁ ମୋଟେ ଚିହ୍ନି ପାରିଲି ନାହିଁ ।''

ଟିବୁଲ୍ ଡାକିଲା, ''ସୁଓକ୍,'' ତୁ ଡକ୍ଟରଙ୍କ କଥା ବୁଝିପାରିଲୁ ତ ?''

କଣ୍ଢେଇଟି ହସି ହସି କହିଲା, ''ହଁ, ସେ କହୁଛନ୍ତି ଯେ ତିନି ମୋଟା ଲୋକ ତାଙ୍କ ପୁଅ ଟୁଟିର କଣ୍ଢେଇଟା ଡକ୍ଟରଙ୍କୁ ସଜାଡ଼ିବାକୁ ଦେଇଥିଲେ । ମୁଁ କୁଆଡ଼େ ସେହି କଣ୍ଢେଇ ।''

ଟିବୁଲ୍ କହିଲା, ''ନା ନା, ମୁଁ ତାଙ୍କୁ ବୁଝେଇ ଦେଉଛି ।'' ତା'ପରେ ସେ ଡକ୍ଟରଙ୍କ ଆଡ଼କୁ ଚାହିଁ କହିଲା, ''ଡକ୍ଟର, ମୁଁ ଠିକ୍ ସତକଥା କହୁଛି ।



ସୁଓକ୍ କଣ୍ଢେଇ ନୁହଁ, ସେ ଗୋଟିଏ କୁନି ଝିଅ । ସେ ମୋର ଟିକି ବନ୍ଧୁ । ସେ ଖୁବ୍ ଭଲ ନାଚ କରେ ଆମ ସର୍କସ୍‌ରେ । ମୋ ସଙ୍ଗେ ଦଉଡ଼ିରେ ଚଢ଼ି ସେ ଖୁବ୍ ଭଲ ଖେଳ ଦେଖାଏ ।''

ଡକ୍ଟର କହିଲେ, ''ହଁ, ସୁଓକକୁ ମୁଁ ଏବେ ଚିହ୍ନି-ପାରିଲି । ଖୁବ୍ ପରିଷ୍କାର ଭାବରେ ମୋର ମନେପଡୁଛି ତା' କଥା । ସେଦିନ ଖେଳ ଦେଖାଇବାବେଳେ ଜଣେ ସ୍ତ୍ରୀ ଲୋକଙ୍କର ଚାକର ତାକୁ ମାରିବାକୁ ଗଲାବେଳେ ମୁଁ ତାକୁ ରକ୍ଷା କରିଥିଲି । କିନ୍ତୁ ମୁଁ ବୁଝିପାରୁନି ଟୁଟିର କଣ୍ଢେଇଟି ଏ କାହିଁକି ଦେଖାଯାଉଛି ?''

ଏଥର ଡକ୍ଟରଙ୍କର ମନ ଖରାପ ଆହୁରି ବଢ଼ି-ଗଲା । ସତକୁସତ ସେ ଯେ ଟୁଟିର କଣ୍ଢେଇଟି ହଜାଇ ଦେଇଛନ୍ତି ଏକଥା କହିଦେଇ ସେ ନୀରବ ରହିଗଲେ ।

ଟିବୁଲ୍ କହିଲା, ''ଡକ୍ଟର, ଆପଣ ମନକଷ୍ଟ କରନ୍ତୁନାହିଁ । ଆପଣଙ୍କ କଣ୍ଢେଇକୁ ଆପଣ ପାଇ-ସାରିଛନ୍ତି ।''

ଡକ୍ଟର ଆଶ୍ଚର୍ଯ୍ୟରେ ପଚାରିଲେ, ''କ'ଣ କହୁଛ ଟିବୁଲ୍ ? ତୁମ କଥା ମୁଁ ଆଦୌ ବୁଝିପାରୁନାହିଁ ।''

ଟିବୁଲ୍ କହିଲା, ''ଟିକିଏ ଅପେକ୍ଷା କରନ୍ତୁ, ସବୁ ଠିକ୍ ବୁଝିପାରିବେ ।''

ତା'ପରେ ସେ ସୁଓକ୍‌କୁ କହିଲା, ''ସୁଓକ୍, ତୁ ସବୁବେଳେ ମୋ' କଥାମାନି ଚଳୁ । ରବିବାର ଦିନ

ଆମେ ସର୍କସ୍ ଦେଖାଇବାବେଳେ ମୁଁ ତତେ କହେ, ଆଲିଜ୍ (ଆରମ୍ଭ କରିବା) । ତୁ ସଙ୍ଗେ ସଙ୍ଗେ ତାରରେ ଚାଲିବାକୁ ଆରମ୍ଭ କରୁ । ମୁଁ ମଝିରେ ଠିଆହୋଇ ତତେ ଅପେକ୍ଷା କରିଥାଏ । ତା' ପରେ ମୁଁ ଆଣ୍ଠେଇ-ପଡ଼େ, ତୁ ପାଦ ରଖି ମୋ' କାନ୍ଧ ଉପରେ ଚଢ଼ିଯାଉ । ସେତେବେଳେ କ'ଣ ତତେ ଡର ଲାଗେ ?''

ଡକ୍ଟର ସେମିତି ବୋକାଙ୍କ ପରି ଚାହିଁ ରହିଥାଆନ୍ତି ।

କିଛି ସମୟ ପରେ ସୁଓକ୍ ହସି ହସି କହିଲା, ''ଟିବୁଲ୍, ମତେ ଏବେ କ'ଣ କରିବାକୁ ହେବ ?''

ଟିବୁଲ୍ କହିଲା, ''ଦେଖ୍, ଏବେଠାରୁ ତତେ ଗୋଟିଏ କଣ୍ଢେଇର ଅଭିନୟ କରିବାକୁ ପଡ଼ିବ ।'' ତା'ପରେ ସେ ସୁଓକ୍ ଓ ଡାକ୍ତରଙ୍କୁ ଟିକିନିଖି ଭାବରେ ସବୁକଥା ବୁଝେଇଦେଲା ।

ସେ କହିଲା, ''ସୁଓକ୍, ତୁ ଜଣେ ଭଲ ଅଭିନେତ୍ରୀ । ଯଦିଓ ତୁ ଛୋଟ ପିଲା, ତୁ ମଧ ଅତି ସାହସୀ ଓ ଚଲାକ୍ ଚତୁର ଝିଅ ।''

ସୁଓକ୍ ଏତେଗୁଡ଼ାଏ ପ୍ରଶଂସା ଶୁଣି ଖୁସୀ ହେଉଥିଲେ ମଧ ତାକୁ ଭାରି ଲାଜ ମାଡ଼ିଲା ।

ଟିବୁଲ୍ କହିଲା, ''ଏବେଠାରୁ ତତେ ଟୁଟିର କଣ୍ଢେଇ ଭାବରେ ଅଭିନୟ କରିବାକୁ ପଡ଼ିବ । ମନେ ରହିଲା ତ ?''

ସୁଓକ୍ ଖୁସିରେ ରାଜି ହେଇଗଲା । ପୁଣି ଟିବୁଲ୍ କହିଲା, ''ଆହୁରି କଥା ଅଛି ଶୁଣ । ଏତିକି କାମ କଲେ କେବଳ ଚଳିବନାହିଁ । ତୁ ପ୍ରସ୍ପେରୋକୁ ଜାଣିଛୁ ?''

ସୁଓକ୍ କହିଲା, ''ତାଙ୍କୁ ପୁଣି ଏଠାରେ କିଏ ନ ଜାଣେ ?''

ଟିବୁଲ୍ କହିଲା, ''ତିନି ମୋଟା ଲୋକଙ୍କ ଉଆସରେ ଗୋଟିଏ ଲୁହା ପଞ୍ଜୁରୀରେ ସେ ବନ୍ଦୀହୋଇ ରହିଛି । ତୋର ପ୍ରଧାନ କାମ ହେଲା ତୁ ତାକୁ ପଞ୍ଜୁରୀ ଖୋଲି ମୁକ୍ତ କରିବୁ ।''

''ହଁ-ହଁ, ମୁଁ ନିଶ୍ଚୟ ସେ ଲୁହା ପଞ୍ଜୁରୀର ତାଲା ଖୋଲିଦେବି ।''

''ଆରେ ଶୁଣ, ପ୍ରସ୍ପେରୋ କିପରି ସେଠାରୁ ଲୁଚି ପଳେଇଆସିବ ସେକଥା ମୁଁ ତତେ ବତେଇ-ଦଉଛି ।'' ଟିବୁଲ୍ ତାକୁ ବୁଝାଇବାକୁ ଆରମ୍ଭ କଲା ।

''ଉଆସର ରୋଷେଇ ଘର ପାଖରେ ଗୋଟିଏ ବଡ଼ ପିତ୍ତଳର ହାଣ୍ଡି ଥୁଆହୋଇଛି । ତା'ର ଘୋଡ଼ଣୀ ଖୋଲିଦେଲେ ତୁ ଗୋଟାଏ ସୁଡ଼ଙ୍ଗ ରାସ୍ତା ଦେଖି-ପାରିବୁ । ସେଇ ରାସ୍ତାରେ ଚାଲିଆସିଲେ ଉଆସ ବାହାରେ ଶୀଘ୍ର ପହଞ୍ଚିଯାଇ ପାରିବୁ ।''

ଡକ୍ଟର କହିଲେ, ''ଠିକ୍ ଅଛି, ଏଥର ଆମେ ଶୀଘ୍ର ଏଠାରୁ ବାହାରି ପଡ଼ିବା । 'ଏବେ ବି ସୂର୍ଯ୍ୟ ଉଠିନାହିଁ । ମା' ସୁଓକ୍, ତୋର ସବୁଠାରୁ ଭଲ ପୋଷାକ ପିନ୍ଧି ବାହାରିପଡ଼୍ ତ ।''

ସୁଓକ୍ ପୋଷାକ ବଦଳାଇ ପ୍ରସ୍ତୁତ ହେଲା । ସୂର୍ଯ୍ୟର ପ୍ରଥମ କିରଣ ତା' ଉପରେ ପଡ଼ିବାରୁ ସେ ଛୋଟ ପରୀଟିଏ ଭଳି ଦେଖାଗଲା । ଜନ୍ମଦିନର ପୋଷାକ ପିନ୍ଧି ସୁନ୍ଦର ଦେଖାଯାଉଥିବା ଯେକୌଣସି ଛୋଟ ଝିଅଠାରୁ ସେ ବେଶୀ ସୁନ୍ଦର ଦେଖାଯାଉଥିଲା ।

ପୋଷାକଟି ଗୋଲାପି ରଙ୍ଗର । ସେଥିରେ ଛୋଟ ଛୋଟ ସୁନେଲି ତାରା ସବୁ ଚକ୍‌ଚକ୍ କରୁଥିଲେ ।

''ମୁଁ ପ୍ରସ୍ତୁତ ହେଇଗଲି'' – ଏତିକି କହି ସୁଓକ୍ ନାଚିଉଠିଲା । ସରକସ୍‌ର ଲୋକମାନେ ତାକୁ ଆନନ୍ଦ

ମନରେ ବିଦାୟ ଦେଲେ । କେବଳ ବୁଢ଼ୀ ଅଗଷ୍ଟ ଟିକିଏ ଦୀର୍ଘଶ୍ୱାସ ତ୍ୟାଗକରି କହିଲା, ''ତୋ' କାମ ସାରି ତୁ ଶୀଘ୍ର ଚାଲିଆସିବୁ ମା' ।''

ଟିବୁଲ୍ ମଧ୍ୟ ସେମାନଙ୍କୁ ବିଦାୟ ଜଣାଇ ଚାଲିଗଲା । ପୂର୍ବଦିନ ତାକୁ ଖୋଜିବାବେଳେ ଜଗୁଆଳ-ମାନେ ଯୋଉ ଘର ପୋଡ଼ି ଦେଇଥିଲେ, ସେ ଘରର ଲୋକମାନଙ୍କର ଅବସ୍ଥା କିପରି ଅଛି ଦେଖିବାପାଇଁ ସେ ଶୀଘ୍ର ଚାଲିଗଲା ।

ଡକ୍ଟର ତାଙ୍କ ଘୋଡ଼ାଗାଡ଼ିରେ ସୁଓକ୍‌କୁ ନେଇ ବସିଲେ । ଗାଡ଼ି ଚାଲିଲା ତିନି ମୋଟା ଲୋକଙ୍କ ଘର ଉଦ୍ଦେଶ୍ୟରେ ।

ଡକ୍ଟର ପଚାରିଲେ, ''ତୁ ଡରୁଛୁ କି ମା' ?''
ଉତ୍ତର ଦେବାକୁ ଯାଇ ସୁଓକ୍ କେବଳ ହସିଲା ଟିକିଏ ।

ସ୍ନେହରେ ଝିଅଟିର ମୁଣ୍ଡ ସେ ଆଉଁଶିଦେଲେ ।

ଗାଡ଼ି ଚାଲିଲା । କିଛିବାଟ ଗଲାପରେ ହଠାତ୍ କୁକୁର ଭୁକିବା ଶୁଣାଗଲା । ସେମାନେ ଗାଡ଼ିର ଝରକା-ବାଟେ ମୁହଁ ଗଳାଇ ପଛକୁ ଚାହିଁଲେ ।

ସେ ଦେଖିଲେ, ଗୋଟିଏ କୁକୁର କ'ଣ ଗୋଟିଏ ଗୋଲାପି ରଙ୍ଗର ଜିନିଷଧରି ଟାଣୁଛି ଏବଂ ଆଉ ଜଣେ ପତଳା ଲୋକଟିଏ ସେ ଜିନିଷଟା କୁକୁରଠାରୁ ଟାଣିଆଣିବାର ଚେଷ୍ଟା କରୁଛି । ଶେଷକୁ ସେ ଜିତିଲା । ଜିନିଷଟି ପାଇବା ପରେ ନିଜ ଛାତିରେ ଜାକି ଦୌଡ଼ି-ବାରେ ଲାଗିଲା ।

ଡକ୍ଟର ଦେଖିଲେ, ସେ ଗୋଟିଏ ସାନଝିଅକୁ ଛାତିରେ ଜାକିନେଇ ଯାଉଛି ଏବଂ ଝିଅର ପେଟରେ ଗୋଟାଏ କଣା ହୋଇଯାଇଛି ।

ସୁଓକ୍ ମଧ୍ୟ ଆଶ୍ଚର୍ଯ୍ୟରେ ପାଟିକଲା, ''ଠିକ୍ ମୋ ଭଳି ଦେଖାଯାଉଛି'' ଏତିକି କହୁକହୁ ତା ସିଟ୍‌ରୁ ସେ ପଡ଼ିଗଲା ଏବଂ ଉଠିପଡ଼ି ପରଦାରେ ମୁହଁ ଲୁଚେଇଦେଲା ।

ତା' ଚିତ୍କାର ଶୁଣି ଦଉଡୁଥିବା ଲୋକଟି ଟିକିଏ ଠିଆହୋଇଯାଇ ପଛକୁ ଚାହିଁଲା । ଡକ୍ଟର ତାକୁ ଚିହ୍ନିପାରିଲେ । ସେ ସେଇ ନାଚମାଷ୍ଟର 'ଏକ, ଦୁଇ, ତିନ୍' ।

ତାଙ୍କ ଗାଡ଼ି ଯେଉଁଆଡ଼େ ଚାଲୁଥିଲା ତା'ର ବିପରୀତ ଦିଗରେ ସେ ଦଉଡ଼ି ଦଉଡ଼ି ପଳାଇଗଲା ।

## କଣ୍ଢେଇଟି ଭଲ ଖାଇପାରୁଛି

ଟୁଟି ବାଲ୍‌କନି ଉପରେ ଠିଆହୋଇ ଚାହିଁ-ରହିଥିଲା । ତା' ପାଖରେ ତା'ର ଭୂଗୋଳ ଶିକ୍ଷକ ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ଧରି ଠିଆହୋଇ ଚାହିଁ-ଥିଲେ । ପ୍ରକୃତରେ ଟୁଟିର ପଢ଼ିବାକୁ ମନ ନଥିଲା । ସେ ତା'ର କଣ୍ଢେଇ ଆସି ପହଞ୍ଚିବ ବୋଲି ଅପେକ୍ଷା କରିଥିଲା ।

ତା'ର ଶିକ୍ଷକ କହିଲେ, ''କାହିଁ, ମୁଁ ତ ଦୂରରେ କାହାକୁ ଦେଖିପାରୁନି ।''

ଟୁଟି କହିଲା, ''ଆପଣ କ'ଣ ସତ କହୁଛନ୍ତି କାହାକୁ ଦେଖିପାରୁନାହାନ୍ତି ?''

ଶିକ୍ଷକ କହିଲେ, ''ରୁହ, ଯୁକ୍ତି କରନା । ମୁଁ ବଗିଚାରେ ଯୁଇ ଫୁଲର ବୁଦା ଦେଖୁଛି । ପ୍ରଜାପତି ସବୁ ଉଡୁଛନ୍ତି । ସୈନ୍ୟମାନେ ଜଗିଛନ୍ତି । ଆହୁରି ଦୂରରେ, ରହ . . . ରହ ।''

ଟୁଟି ଆଗ୍ରହର ସହ ଚାହିଁ ରହିଥାଏ । ଏତିକି-ବେଳେ ଉଆସର ତିନିଜଣ ବଡ଼ ଅଫିସର୍ ଘୋଡ଼ାରେ

ଚଢ଼ି ରାସ୍ତାଆଡ଼କୁ ଚାଲିଲେ । ଫାଟକ ପାଖରେ ଗୋଟାଏ ଘୋଡ଼ାଗାଡ଼ି ଦେଖାଗଲା ।

ଟୁଟି ଆନନ୍ଦରେ ହୁର୍‌ରା . . . ହୁର୍‌ରା . . . ଚିତ୍କାର କଲା । କାଳେ ଟୁଟି ଅତି ଖୁସିରେ ଉପରୁ ପଡ଼ିଯିବ, ସେଥିପାଇଁ ବଗିଚାରେ କାମ କରୁଥିବା ମାଳି ଠିକ୍ ବାଲ୍‌କନି ତଳେ ତାକୁ ଜଗି ଠିଆହୋଇ ରହିଲା ।

ଘୋଡ଼ାଗାଡ଼ିଟି ଉଆସ ପାଖକୁ ଆସିଗଲା । ଏଥର ଆଉ ତାକୁ ଦେଖିବା ପାଇଁ ଦୂରବୀକ୍ଷଣ ଯନ୍ତ୍ରର ଆବଶ୍ୟକତା ହେଲାନାହିଁ । ସେହି ଆନନ୍ଦମୟ ମୁହୂର୍ତ୍ତରେ ଟୁଟି ଡେଇଁ ଡେଇଁ ନାଚିବାକୁ ଆରମ୍ଭ କରିଦେଲା । ଶେଷରେ ଦେଖାଗଲା ଯେ ଜଣେ ବୁଢ଼ା ଦାଢ଼ିଆ-ଲୋକ ଭିତରୁ ସୁନ୍ଦର ଏକ କଣ୍ଢେଇ ଧରି ବାହାରି ଆସୁଛନ୍ତି । ସକାଳର ଉଜ୍ଜ୍ୱଳ ଆକାଶ ତଳେ ଏ ଦୃଶ୍ୟ ଅତି ସୁନ୍ଦର ମନେହେଉଥିଲା । ଗୋଟାଏ ମିନିଟ୍ ମଧ୍ୟରେ କଣ୍ଢେଇଟି ଉଆସ ଭିତରକୁ ନିଆଗଲା । କଣ୍ଢେଇଟି ନିଜ ମନକୁ ଚାଲିଯାଇ ପାରୁଥିଲା ।

ବିଚାରୀ ସୁଓକ୍ ତାର ଅଭିନୟ ଅତି ସୁନ୍ଦର ଭାବରେ କରିବାକୁ ଚେଷ୍ଟା କରୁଥିଲା । ସେ ଅତି ଧୀର ଭାବରେ ରହିଥିଲା । ସେ ଭାବିଲା, ତାର ଅଭିନୟ କରିବାରେ ଏପର୍ଯ୍ୟନ୍ତ କିଛି କଷ୍ଟ ହୋଇନାହିଁ । କିନ୍ତୁ ସର୍‌କସ୍‌ରେ ବେଳେବେଳେ ବତୀ ଲଗାଇବା କିମ୍ବା ଅନ୍ୟ କିଛି କଷ୍ଟକର ଖେଳ ଦେଖାଇବା ପରି ହୁଏତ ତାକୁ କଷ୍ଟକର ଅଭିନୟ କରିବାକୁ ପଡ଼ିପାରେ । ତେବେ ସେ କିଛି କଷ୍ଟକର କାର୍ଯ୍ୟ କରିବାକୁ ଆଦୌ ଡରୁନଥିଲା ।

କିନ୍ତୁ ଡକ୍ଟର ଭାରି ଡରୁଥିଲେ । ସେ ସୁଓକ୍‌ର ପାଖେ ପାଖେ ରହୁଥିଲେ ।

ଚକ୍‌ଚକିଆ ଚଟାଣରେ ସେହି ସାନଝିଅଟିର ପ୍ରତିଛବି ଗୋଟିଏ ଗୋଲାପି ରଙ୍ଗର ମେଘଭଳି ଦେଖାଯାଉଥିଲା କିମ୍ବା ସ୍ଥିର ପାଣିରେ ଗୋଟିଏ ସୁନ୍ଦର ଫୁଲ ଡାଳ ଭାସିଗଲେ ଯେପରି ଦେଖାଯାଏ, ଠିକ୍ ସେପରି ମନେହେଉଥିଲା । ଉଆସର ସମସ୍ତ କର୍ମଚାରୀ ତାକୁ ସମ୍ମାନ ଦେଖାଇ ତା'ର ଦୁଇକଡ଼ରେ ଠିଆହୋଇ ରହିଥିଲେ । ସତେ ଯେମିତି ମନେହେଉଥିଲା, ଉଆସର ପ୍ରକୃତ ମାଲିକ ଆସୁଛନ୍ତି । ତେଣୁ ତାଙ୍କୁ ସମ୍ମାନ ଜଣାଇବାକୁ ଏମାନେ ଠିଆହୋଇ ରହିଛନ୍ତି । ସୁଓକ୍‌ର ପାଦ ଶବ୍ଦରେ ଠିକ୍ ଫୁଲପାଖୁଡ଼ା ଚଟାଣରେ ଝରିପଡ଼ିବା ଭଳି ଶବ୍ଦ ହେଉଥିଲା ।

ଏତିକିବେଳେ ସିଡ଼ି ପାହାଚରେ ଟୁଟି ଓହ୍ଲାଇ ଆସି ପହଞ୍ଚିଲା ।

ସୁଓକ୍ ଆଗରୁ ଟୁଟି କଥା ଶୁଣିଥିଲା । ଏବେ ତାକୁ ଦେଖିଲା । ପତଳା ହୋଇ ସାନ ବାଳକଟିଏ । ତା'ର କିନ୍ତୁ ଧାରଣା ଥିଲା, ଟୁଟି ନିଶ୍ଚୟ ତିନି ମୋଟା-ଲୋକଙ୍କ ଭଳି କିମ୍ବା ସେଇ ମୋଟୀ ବୁଢ଼ୀ ପରି ଭୟଙ୍କର ହେଇଥିବ । ଯାହାହେଉ ଟୁଟିକୁ ଦେଖି ତାକୁ ଭାରି ଖୁସିଲାଗିଲା । ତା'ର ବଡ଼ ବଡ଼ ପାଉଁଶିଆ ଆଖିରେ ସେ ଟୁଟି ଆଡ଼େ ଚାହିଁ ରହିଲା ।

''ତୁ କ'ଣ ସେଇ କଣ୍ଢେଇ ?'' ଟୁଟି ତା'ର ହାତ ଛୁଇଁ ପଚାରିଲା ।

'ହେ ଭଗବାନ୍, ମୁଁ ଏବେ କ'ଣ କରିବି ?' ସୁଓକ୍ ସତକୁସତ ଡରୁଥିଲା । ସେ ଭାବିଲା, 'କଣ୍ଢେଇମାନେ କ'ଣ କଥା କହନ୍ତି ? ଏ କଥାତ ମତେ କେହି କହି-ନାହାନ୍ତି ମୋ ଜଗୁଆଳମାନେ ଯେଉଁ କଣ୍ଢେଇଟିକୁ ଭାଙ୍ଗିଦେଲେ ସେ କଥା କହୁଥିଲା କି ନାହିଁ ?'

ଏତିକିବେଳେ ଡକ୍ଟର ତାକୁ ରକ୍ଷା କରିବାକୁ ତା' ପାଖକୁ ଦୌଡ଼ି ଆସିଲେ । ସେ ଟୁଟିକୁ କହିଲେ,



"ମହାଶୟ, ଆପଣଙ୍କ କଣ୍ଢେଇକୁ ମୁଁ ଚିକିତ୍ସା କରି ପୂରାପୂରି ଭଲକରିଦେଇଛି । କେବଳ ଯେ ତା' ଜୀବନ ଫେରାଇ ଆଣିଛି ତା ନୁହେଁ, ତାକୁ ଆହୁରି ଅଦ୍ଭୁତ କରିଦେଇଛି । ସେ ଏବେ ଆପଣଙ୍କ ସହ କଥା କହିପାରିବ, ଗୀତ ମଧ୍ୟ ଗାଇ ପାରିବ ।"

"କି ଆଶ୍ଚର୍ଯ୍ୟର କଥା !" ଟୁଟି ଅତି ଆସ୍ତେ କହିଲା । ତା ପରେ ସେଇ ଟିକି ଅଭିନେତ୍ରୀଟି ଗୋଟିଏ ମଣ୍ଡପରେ ତା'ର ନାଚ୍ ଦେଖାଇବାକୁ ପ୍ରସ୍ତୁତ ହେଲା । ବହୁ ଦର୍ଶକ ନାଚ୍‌ଘର ଭିତରେ, ବାହାରେ, ସିଡ଼ିରେ, ଝରକା ପାଖରେ ନାଚ୍ ଦେଖିବାକୁ ପ୍ରସ୍ତୁତ ହେଇ ରହିଲେ ।

ସୁଓକ୍ ଦେଖିଲା ଦର୍ଶକମାନେ ତାକୁ ଚାହିଁ ଖାଲି ହସୁଛନ୍ତି ।

ରୋଷେଇ ଘରେ କାମ କରୁଥିବା ବାଳକମାନଙ୍କ ହାତରୁ ଟୋପା ଟୋପା ଚିନି ସିରା ପଡୁଥିଲା । କାହା

ହାତ ତେଲିଆ ହେଇଥିଲା, ତଥାପି କାମ ଛାଡ଼ି ସେମାନେ ନାଚ ଦେଖିବାକୁ ଆସିଥିଲେ । ତିନି ମୋଟା ଲୋକଙ୍କ ମନ୍ତ୍ରୀସବୁ, ଉଆସର ସଙ୍ଗୀତଜ୍ଞ ଦଳ, ଡାକ୍ତର ଓ ସ୍ତ୍ରୀଲୋକମାନେ ଆଗ୍ରହର ସହିତ ଅପେକ୍ଷାକରି ବସିରହିଥାଆନ୍ତି । ଉଆସର ଚାକରମାନେ ମଧ୍ୟ ମନ୍ତ୍ରୀମାନଙ୍କ ଭଳି ଚକ୍‌ଚକିଆ ପୋଷାକ ପିନ୍ଧି ନାଚ ଦେଖିବାକୁ ଆସିଥାଆନ୍ତି ।

ଆଗରୁ ସର୍କସ୍‌ରେ ନାଚ ଦେଖାଇବାବେଳେ ସ୍କୁଲ ପିଲା, ଦୋକାନୀ ଇତ୍ୟାଦି ସବୁପ୍ରକାର ଦର୍ଶକ-ମାନେ କଥାବାର୍ତ୍ତା କରନ୍ତି ଯେ ସୁଓକ୍ ସାରା ପୃଥିବୀର ଶ୍ରେଷ୍ଠ ଅଭିନେତ୍ରୀ । ସେମାନେ ତାଙ୍କ ପାଖରେ ଯାହା ପଇସା ଥାଏ ତା' ପାଖକୁ ପକାନ୍ତି ।

ଏଥର ସୁଓକ୍ କଣ୍ଢେଇଭଳି ତା'ର ନାଚ ଆରମ୍ଭକଲା । ସଙ୍ଗୀତର ତାଳରେ ଗୋଡ଼ ପକାଇ, ହାତ ହଲାଇ, ମୁଣ୍ଡ ହଲାଇ ତାକୁ ନାଚିବାକୁ ହେଲା । ଓଠରେ ଦୁଷ୍ଟାମୀର ହସ, ତଥାପି ସେ ପ୍ରକୃତ କଣ୍ଢେଇର ଆଖିଭଳି ତା' ଆଖି ବଡ଼ବଡ଼ କରି ଚାହିଁବାକୁ ଚେଷ୍ଟା କରୁଥାଏ ।

ଏଥର ସୁଓକ୍ ନାଚି ନାଚି ତା'ର ଗୀତ ଆରମ୍ଭ କଲା, ସେ ଗାଇଲା –

ବିଜ୍ଞାନର ଶକ୍ତିବଳେ
ଯଶ ତୁମର ଅମର ରହେ,
ଦୟାଳୁ ତୁମେ ହେ ଡକ୍ଟର୍
ଜୀବନ ଦେଲ ମୁଁ କଥା କହେ ।
ଦେଖ୍ ମୁଁ ହସେ ତୋ'ରି ପାଶେ
ତୋ'ରି ଗେହ୍ଲା ଭଉଣୀ ମୁହିଁ ।
କୁନି ଭାଇରେ ଫେରି ଆସିଲି
ଆଉ ତୁ ମୋତେ ଭୁଲିବୁ ନାହିଁ ।

ସତେ କିରେ ମୁଁ ମରି ପାରିଲି
ଗହନ ନିଦେ ଶୋଇ ପଡ଼ିଲି ।
ସପନ ଦେଖି କାନ୍ଦୁଥୁ ତୁହି
ମୁଁ ବି କାନ୍ଦେ ନିଦରେ ଶୋଇ ।
ଉଠିପଡ଼ି ମୁଁ ଆଖି ଖୋଲିଲି
ହସିଲି କେତେ ଗୀତ ଗାଇଲି ।
ସୁନା ଭାଇରେ ତୁ ଜାଣିବୁ
'ସୁଓକ୍' ନାମ ମନେ ରଖିବୁ ।

"ସୁଓକ୍", ଟୁଟି ଆସ୍ତେ ଡାକିଲା । ତା' ଆଖି ଲୁହପୂର୍ଣ୍ଣ ହୋଇଗଲା । କଣ୍ଢେଇଟି ଗୀତ ବନ୍ଦକଲା । ସମସ୍ତେ ତାକୁ ବହୁତ ପ୍ରଶଂସା କଲେ । ଧୀରେ ଧୀରେ ସେ ସ୍ଥାନ ଛାଡ଼ିଗଲାବେଳେ କିଏ କିଏ କହୁଥିଲେ,



"ଆହାଃ, ଏପରି ମଧୁର ସ୍ୱର ଆମେ କେବେ ଶୁଣି-ନଥିଲୁ ।" ଜଣେ ବଡ଼ ଅଫିସର୍ କହିଲେ, "ବଡ଼ ଆଶ୍ଚର୍ଯ୍ୟ କଥା, ଏ କଣ୍ଢେଇଟା କିମିତି ଗୀତ ଗାଉଛି !"

ଡକ୍ଟର ଓ ସୁଓକ୍‌ଙ୍କୁ ତିନି ମୋଟା ଲୋକଙ୍କ ପାଖକୁ ନିଆଗଲା । ସେତେବେଳେ ତିନି ମୋଟା ଲୋକ ବଲ୍ ଖେଳରେ ବ୍ୟସ୍ତଥିଲେ । ଜଣେ ଡକ୍ଟର ତାଙ୍କ ଦାୟିତ୍ୱରେ ଥିଲେ । ସେମାନେ ଅଳ୍ପ ଖେଳିଲେ ମଧ୍ୟ କ୍ଲାନ୍ତ ହୋଇପଡୁଥିଲେ । ତାଙ୍କ ଜାମା ତାଙ୍କ ଦେହରେ ଝାଳ ସହ ଅଠାଭଳି ଲାଗିଯାଇଥିଲା । ହଠାତ୍ ସୁଓକ୍ ଉପରେ ସେମାନଙ୍କ ଦୃଷ୍ଟି ପଡ଼ିଲା । ଟୁଟିର ମୁହଁଟି ସଜ ଗୋଲାପଭଳି ସତେଜ ଦେଖାଯାଇଥିଲା, କାରଣ ତା' କଣ୍ଢେଇକୁ ଦେଖି ସେ ଖୁବ୍ ଖୁସୀ ହେଇଯାଇଥିଲା ।

ତିନି ମୋଟା ଲୋକଙ୍କ ଭିତରୁ ଜଣେ କହିଲା, "ଓଃ ଆପଣ ତେବେ ଡକ୍ଟର ଗାସ୍‌ପର୍ ଆର୍‌ନେରୀ ।" ଡକ୍ଟର ମୁଣ୍ଡ ନୁଆଁଇ ଅଭିବାଦନ ଜଣାଇଲେ ।

"କଣ୍ଢେଇଟି କିପରି ଅଛି ?" ଆଉ ଜଣେ ପଚାରିଲା ।

"ଓଃ, କି ଅଦ୍ଭୁତ !" ଟୁଟି ଖୁସିରେ ପାଟିକରି ଉଠିଲା । ଟୁଟିକୁ ଏତେ ଖୁସୀ ହେବା ସେମାନେ ଦେଖି-ନଥିଲେ । ତିନି ମୋଟା ଲୋକ ଏକାଠି ପାଟିକଲେ, "ଆମ ଟୁଟିର ମନ ତ ଭାରୀ ଆନନ୍ଦ ଜଣାପଡୁଛି ।"

ପ୍ରଥମ ମୋଟା ଲୋକ କହିଲା, "ଡକ୍ଟର, ତୁମେ ଆମର ଆଦେଶ ପାଳନ କରିଛ । ଏବେ କୁହ, କ'ଣ ପୁରସ୍କାର ନେବ ?"

ସମସ୍ତେ କିଛି ସମୟ ନୀରବ ରହିଗଲେ । "ଗତକାଲି ଅପରାଧୀମାନଙ୍କପାଇଁ ଦଶଟି ଫାଶୀଖୁଣ୍ଟ କୋର୍ଟ ଛକରେ ତିଆରି ହେଉଥିଲା ନା ?" ଡକ୍ଟର ପଚାରିଲେ ।

"ହଁ ସେମାନଙ୍କୁ ଆଜି ଫାଶୀ ଦିଆଯିବ ।" ମୋଟା ଲୋକମାନଙ୍କ ମଧ୍ୟରୁ ଜଣେ କହିଲା ।

"ମୁଁ ଆଶାକରେ, ଆପଣ ସବୁ ବନ୍ଦୀମାନଙ୍କୁ ମୁକ୍ତି ଦେଇଦେବେ । ଏହାହିଁ ମୋର ଆପଣମାନଙ୍କୁ ଏକାନ୍ତ ଅନୁରୋଧ ।"

ଏକଥା ଶୁଣି ତିନି ମୋଟା ଲୋକ ରାଗରେ ଚିତ୍କାର କଲେ, "ଅସମ୍ଭବ, ଏ ଅନୁରୋଧ ଆମେ ରକ୍ଷିପାରିବୁ ନାହିଁ ।"

"ମୁଁ ଦାବୀ କରୁଛି ଯେ ଆପଣମାନେ ଯେଉଁ ଲୋକମାନଙ୍କୁ ସେଦିନ ଧରିନେଇଛନ୍ତି, ସେମାନଙ୍କୁ ମୁକ୍ତିଦେବେ ଏବଂ ଦଶଟି ଫାଶୀଖୁଣ୍ଟରେ ନିଆଁ ଲଗାଇ-ଦେବେ ।" ଡକ୍ଟର ଆସ୍ତେ କହିଲେ, ଅଥଚ ଦୃଢ଼ ସ୍ୱରରେ କହୁଥିଲେ ।

"ନା . . . ନା . . . ସେମାନଙ୍କୁ ସମସ୍ତଙ୍କୁ ହିଁ ଆଜି ଫାଶୀ ଦିଆଯିବ ।" ତିନି ମୋଟା ଲୋକ ଏକାଠି ଏଇ ଗୋଟିଏ ଉତ୍ତର ଦେଲେ ।

"ମରିବା ଭଳି ଅଭିନୟ କର୍ ।" ଡକ୍ଟର କଣ୍ଢେଇ ପାଖରେ ଚୁପ୍‌ଚାପ୍ କହିଲେ । ସୁଓକ୍ ସଙ୍ଗେ ସଙ୍ଗେ ସବୁ ବୁଝିଗଲା ଏବଂ ତଳେ ପଡ଼ିବା ଭଳି ହେଲା । ତାକୁ ଧରିପକେଇ ନଥିଲେ ସେ ଚଟାଣରେ ପଡ଼ିଯାଇ-ଥାଆନ୍ତା ।

ଟୁଟି ତା' ପାଖକୁ ଦୌଡ଼ିଗଲା । "ମୋ କଣ୍ଢେଇକୁ ଉଠେଇଦିଅ, ଉଠେଇ ଦିଅ ଜଲ୍‌ଦି" କହି ସେ କାନ୍ଦିପକାଇଲା ।

ସୁଓକ୍ ତଥାପି ସେମିତି ଅସୁସ୍ଥ ଅବସ୍ଥାରେ ପଡ଼ିରହିଲା ।

"ଦେଖ, କଣ୍ଢେଇଟି ପୁଣି ଥରେ ଜୀବନ

ହରେଇଦେବ । ତା ପେଟ ଭିତରେ ଯେଉଁ ସ୍ପ୍ରିଙ୍ଗ୍ ଅଛି ସେଗୁଡ଼ିକ ଭାରୀ ସୂକ୍ଷ୍ମ । ଥରେ ଛିଣ୍ଡିଗଲେ, ଆଉ ସଜାଡ଼ି ହବନି । ଆପଣଙ୍କ ଉତ୍ତରାଧିକାରୀ ଟୁଟିର କଣ୍ଢେଇଟି ଭାଙ୍ଗିଗଲେ, ସେ କେବେ ଖୁସୀହେବନାହିଁ,'' ଡକ୍ଟର କହିଲେ ।

ଟୁଟି ପୁଣି କାନ୍ଦି କାନ୍ଦି କହିଲା, ''ନା . . . ନା, ମୋ' କଣ୍ଢେଇ ମରିବନି । ଡକ୍ଟର ଯାହା କହୁଛନ୍ତି ତୁମେ କରିଦିଅ ।''

ତିନି ମୋଟା ଲୋକ ବାଧ୍ୟରେ ଡକ୍ଟରଙ୍କ ପ୍ରସ୍ତାବରେ ରାଜି ହେଲେ ।

ବନ୍ଦୀମାନଙ୍କୁ ମୁକ୍ତି ଦିଆଗଲା । ଫାଶୀ କାଠସବୁ ମଧ୍ୟ ଜଳାଇ ଦିଆଗଲା । କେବଳ ପ୍ରସ୍ପେରୋକୁ ସେମାନେ ମୁକ୍ତି ଦେଲେନାହିଁ ।

ସୁଓକ୍‌କୁ ସେଠାରେ ଛାଡ଼ି ଡକ୍ଟର ବିଦାୟ ନେଲେ । ଟୁଟି ତା' କଣ୍ଢେଇର ହାତଧରି ବଗିଚାକୁ ନେଇଗଲା । ତା' ମନ ଭାରୀ ଖୁସୀଥାଏ । ସେ ବଗିଚାରେ ଥିବା ଝରଣାକୂଳକୁ ତା'ର କଣ୍ଢେଇକୁ ମଧ୍ୟ ନେଇଗଲା ।

ସୁଓକ୍ ଆଶ୍ଚର୍ଯ୍ୟ ହେଲା । ସେମାନେ ତାକୁ ପ୍ରକୃତ ଜୀବନ ଥିବା ଝିଅଟିଏ ବୋଲି କିପରି ଜାଣିପାରୁ ନାହାନ୍ତି !

ଶୀଘ୍ର ସକାଳର ଖାଇବା ବଢ଼ାହେଲା । ସୁଓକ୍ ଦେଖିଲା ବହୁ ପ୍ରକାରର ମିଠେଇ ଟେବୁଲ୍‌ରେ ବଢ଼ା-ହୋଇଛି । ତା' ଜୀବନରେ ଥରେମାତ୍ର ସେ ଏମିତି ମିଠା ଖାଇବାକୁ ପାଇଥିଲା । ସେ ମଧ୍ୟ ପ୍ରକୃତ ମିଠେଇ ନଥିଲା । ସେ ଖଣ୍ଡିଏ ମିଠା ପାଉଁରୁଟି ।

ଟୁଟି ପାଖରେ ବହୁପ୍ରକାର ବିସ୍କୁଟ, ଫଳ, ମିଠେଇ ଇତ୍ୟାଦି ବଢ଼ାହେଲା ।

'ମୁଁ ଏବେ କ'ଣ କରିବି ?' ସୁଓକ୍ ଦୁଃଖରେ ଭାବିଲା, 'କଣ୍ଢେଇମାନେ ତ ଖାଇପାରନ୍ତି ନାହିଁ । ଓହୋ କେଡ଼େ ସୁନ୍ଦର ମିଠେଇ, ମୁଁ ଖଣ୍ଡେ ଖାଇପାରନ୍ତି ନାହିଁ ?'

ତା'ର ଖାଇବାର ଇଚ୍ଛା ଭାରି ବଢ଼ିଲା । ''ମୋର ଗୋଟିଏ ଛୋଟ ମିଠେଇ ଦରକାର ।'' ସେ ଆସ୍ତେ କହିଲା ।

''ଓଃ, ଭାରୀ ଭଲକଥା ।'' ଟୁଟି ହସି ହସି କହିଲା । ''ତୁ ତ ଆଗରୁ କେବେ ଖାଇପାରୁ ନଥିଲୁ । ମତେ ଏକଥା ଦେଖି ଭାରୀ ବିରକ୍ତ ଲାଗୁଥିଲା । ଯାହାହେଉ, ଏବେ ତୋର ଖାଇବା ଶକ୍ତି ବଢ଼ିଯାଇଛି ।'' ଏତେ କଥା ଟୁଟି ବେଶ୍ ଖୁସିରେ କହିପକାଇଲା ।

ସୁଓକ୍ ମନ ଖୁସିରେ ମିଠେଇ ସବୁ ଖାଇବାରେ ଲାଗିଲା । ଜଣେ ଚାକର କଣ୍ଢେଇର ଖାଇବା ଦେଖି ଆଶ୍ଚର୍ଯ୍ୟରେ ଚାହିଁରହିଲା । ତେଣୁ ଶେଷ ମିଠା ଖଣ୍ଡକ ସୁଓକ୍ ଆଉ ଭୟରେ ଖାଇପାରିଲା ନାହିଁ । ସେ ଅଧା ଖାଇଥିଲା । ସେଇଟା ତଳେ ପଡ଼ି ଭାଙ୍ଗିଗଲା ।

ତା'ପରେ ସେ ଓ ଟୁଟି ମନଖୁସିରେ ଖେଳିବାକୁ ଚାଲିଗଲେ ।

## ଚିଡ଼ିଆଖାନାରେ ସୁଓକ୍

ଦିନ ଦୁଇଟା ବାଜିଲା । ଟୁଟିକୁ ତା'ର ଶ୍ରେଣୀ ଗୃହକୁ ଡକାଗଲା । ସେଇ ସମୟହିଁ ତାର ପାଠ ପଢ଼ିବା ସମୟ । ସେ ପଢ଼ିବାକୁ ଚାଲିଗଲା । ସୁଓକ୍ ଏକା ରହିଲା ।

ଏତେବଡ଼ ଗୋଟାଏ ଉଆସ । କେତେ ବାରଣ୍ଡା, ପାହାଚ, ଅନେକ କୋଠରୀ, ଝରକା, ବାଲ୍‌କନି—

ଦେଖିଲେ ଆଖିପାଏନାହିଁ । ଜଗୁଆଳମାନଙ୍କୁ ଦେଖିଲେ ଭୟ ଲାଗୁଛି । ସେମାନଙ୍କର ପୋଷାକ, ଚାଲିଚଳଣ ସବୁ ଯେମିତି ଅତି ଭୟଙ୍କର ।

କେହି ତା ଆଡ଼େ ଚାହୁଁ ନଥାନ୍ତି । ସମସ୍ତେ ନିଜ ନିଜ କାମ ନେଇ ବ୍ୟସ୍ତ । ଟୁଟିର ଶୋଇବା ଘର ଝରକା ପାଖରେ ଠିଆହୋଇ ସୁଓକ୍ ସବୁଆଡ଼େ ଚାହିଁ ଦେଖୁଛି । ଅନେକ କଥା ଭାବୁଛି ।

ଟୁଟିର ଚିଡ଼ିଆଖାନାରେ ପ୍ରସ୍ପେରୋ ଲୁହା-ପଞ୍ଜୁରୀରେ ରହିଛି, ସୁଓକ୍ ବାରମ୍ବାର ଏଇ କଥାଟି ଚିନ୍ତାକଲା । ତା'ପରେ ସେ ସ୍ଥିରକଲା ଯେ ନିଶ୍ଚୟ ଚିଡ଼ିଆଖାନା ଯାଇ ପ୍ରସ୍ପେରୋକୁ ମୁକ୍ତ କରିବାକୁ ଚେଷ୍ଟା କରିବ । କିନ୍ତୁ ଉପାୟ ?

ତୁମେମାନେ ଆଗରୁ ଜାଣିଛ, ଟୁଟିକୁ ଜୀବନ୍ତ ପିଲାମାନଙ୍କ ସଙ୍ଗରେ ଖେଳିବାକୁ ଛଡ଼ାଯାଏନା । ଭବିଷ୍ୟତରେ ଟୁଟି କିପରି ଅତି ନିଷ୍ଠୁର ହେବ, ସେଥିପାଇଁ ତା'ର ଶିକ୍ଷକ ତା'କୁ ଶିକ୍ଷା ଦିଅନ୍ତି । ଏବେ-ଠାରୁ ଏ ଶିକ୍ଷା ନ ଦେଲେ ଭବିଷ୍ୟତରେ ସେ ତିନି ମୋଟା ଲୋକଙ୍କ ଭଳି ଭାଳେ ଭଲ ରାଜ୍ୟ ଶାସନ କରିପାରିବନାହିଁ । ବିଚରା ଟୁଟି କେବେ ହସଖୁସିରେ ରହିପାରେନା । ତେଣୁ କଣ୍ଢେଇର ହସ ତାକୁ ଭାରୀ ଭଲଲାଗେ । କଣ୍ଢେଇଠାରୁ ଟୁଟି କିଛି ଜାଣିପାରିବ ନାହିଁ ବୋଲି ତାକୁ କଣ୍ଢେଇଟିଏ ଦିଆଯାଇଥିଲା ।

ହେଲେ କ'ଣ ହେବ ? ସେ ତା'ର ଆଦରର କଣ୍ଢେଇଟିକୁ ସବୁଠାରୁ ବେଶୀ ଭଲପାଉଥିଲା ।

ତୁମକୁ ଏସବୁ କଥା ଶୁଣି ଭଲଲାଗୁ ନଥିବ । ଗୋଟିଏ ବାରବର୍ଷର ବାଳକ । କଣ୍ଢେଇ ଧରି କ'ଣ ଖେଳୁଛି ? ସେ ଏବେ ବହୁତ ବିଷୟ ଜାଣିବାପାଇଁ ଇଚ୍ଛାକରନ୍ତା । ଏଇ ବୟସରେ ସେ ବାଘ ଶୀକାର କରିବାକୁ ଭଲ ପାଆନ୍ତା । କିନ୍ତୁ କଣ୍ଢେଇକୁ ସ୍ନେହ କରିବାର ଗୋଟିଏ କାରଣ ଥିଲା । ତୁମେମାନେ ଖୁବ୍ ଶୀଘ୍ର ଏ କାରଣ ଜାଣିଯିବ । ଏବେ ଚାଲ ସୁଓକ୍ ପାଖକୁ ଯିବା ।

ସୁଓକ୍ ଠିକ୍ କରିଥିଲା ଯେ ସେ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରିବ । ନଚେତ୍ ଦିନବେଳା ସେ ଯଦି ଉଆସ ଭିତରେ ବୁଲାଚଲା କରେ ସମସ୍ତେ ଆଶ୍ଚର୍ଯ୍ୟ ହେବେ ଏବଂ ତାକୁ ସନ୍ଦେହ କରିପାରନ୍ତି ମଧ୍ୟ ।

ପାଠପଢ଼ା ସରିବାରୁ ଟୁଟି ଫେରିଆସିଲା । ସୁଓକ୍ ତା' ସଙ୍ଗେ ବହୁତ ଗପସପ ଆରମ୍ଭ କରିଦେଲା । ସେ କହିଲା, "ମୁଁ ଯେତେବେଳେ ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କ ଘରେ ଅସୁସ୍ଥ ଅବସ୍ଥାରେ ଥିଲି, ମୁଁ ଦିନେ ସ୍ୱପ୍ନ ଦେଖିଲି ଯେ ମୁଁ ଗୋଟାଏ ସର୍‌କସ୍‌ରେ ମିଶିଛି । ଦଉଡ଼ି ଉପରେ ଚଢ଼ିଚାଲୁଛି । କେତେ ଅଭିନୟ କରୁଛି ।" ଟୁଟି ଆଖି ବଡ଼ ବଡ଼ କରି ଆଶ୍ଚର୍ଯ୍ୟରେ ସବୁକଥା ଶୁଣୁଥାଏ ।

"ଆମେ ଭାରୀ ଗରିବ । ବେଳେବେଳେ ଖାଇ-ବାକୁ ନପାଇ ଆମେ ରାତିରେ ଉପାସରେ ରହିଯାଉ । ଆମର ଆନ୍‌ରା ବୋଲି ଗୋଟିଏ ଘୋଡ଼ା ଥିଲା । ଖାଇବାକୁ ନପାଇ ସେ ବି ମରିଗଲା ।"

ସୁଓକ୍ ତାର ସ୍ୱପ୍ନକଥା କହିବାକୁ ଯାଇ ସତକୁ-ସତ ସର୍‌କସ୍ ବିଷୟ ସବୁ ଗପିପକାଇଲା । ସେ କିମିତି ଖେଳ ଦେଖାଏ, ଗୀତ ଗାଏ, ପୁଣି ଚାବିଟିଏ ଓଠ ପାଖରେ ଧରି ହ୍ୱିସିଲ୍ ବଜାଏ ।

ସବୁକଥା ଶୁଣିବାକୁ ଟୁଟିକୁ ଭାରି ମଜା ଲାଗୁ-ଥାଏ । ଶେଷରେ ସେ କହିଲା, "ସୁଓକ୍, ମୋ' ପାଖରେ ଗୋଟିଏ ଚାବିଅଛି । ଏଇଟା ନେଇ ହ୍ୱିସିଲ୍ ବଜାଇଲୁ ।"

ଏତିକି କହି ସେ ସାର୍ଟ କଲର୍ ତଳେ ଥିବା ସରୁ ଚେନ୍‌ରୁ ଧଳା ଚାବିଟିଏ ବାହାରକରି ତାକୁ ଦେଲା ।

ସୁଓକ୍ କହିଲା, ‘‘ଏଠି କ’ଣ ଏ ଚାବି ରଖିଛ ?’’

ଟୁଟି କହିଲା, ‘‘ଉଆସର ବଡ଼ ଅଫିସର୍‌ମାନେ ଏ ଚାବି ମତେ ରଖିବାକୁ ଦେଇଛନ୍ତି । ଚିଡ଼ିଆଖାନାରେ ଥିବା ଗୋଟିଏ ପଞ୍ଜୁରୀର ଏ ଚାବି ।’’

ସୁଓକ୍ ଆଶ୍ଚର୍ଯ୍ୟରେ ପଚାରିଲା, ‘‘ସବୁ ଚାବି କ’ଣ ତୁମେ ଏମିତି ଚେନ୍‌ରେ ଝୁଲାଇ ରଖିପାରିବ ?’’

‘‘ନା . . . ନା, ଏଇ ଚାବିଟା ସବୁଠାରୁ ବେଶୀ ଦରକାରୀ । ତେଣୁ ମୋ’ ପାଖରେ ରହିଛି ।’’

ଟୁଟି ଏତେ ବେଶୀ ଖୁସୀ ହୋଇଗଲା ଯେ ଚାବିକୁ ଯତ୍ନରେ ରଖିବା କଥା ମଧ୍ୟ ଭୁଲିଗଲା । ସୁଓକ୍ ମଧ୍ୟ ଚାବିକୁ ହୁସିଲ୍ ଭଳି ପାଟିରେ ଦେଇ ବିଭିନ୍ନ ସ୍ୱରରେ ବଜାଇଲା । ତା’ ପରେ ସେଇଟିକୁ ନିଜ ଫ୍ରକ୍ ପକେଟ୍‌ରେ ରଖିଦେଇ ଟୁଟି ସଙ୍ଗେ ଅନ୍ୟ ଖେଳ ଖେଳିଲା ।

ସନ୍ଧ୍ୟା ହେଲାଣି । ସେମାନେ ନିଜ କୋଠରୀକୁ ଫେରିଗଲେ । ଟୁଟିର ଶୋଇବା ଘର ପାଖରେ ସୁଓକ୍‌ର କୋଠରୀ ।

ଟୁଟି ଖୁବ୍ ଶୀଘ୍ର ଶୋଇଗଲା । ଶୋଇ ଶୋଇ ସେ ବହୁତ ମଜା ସ୍ୱପ୍ନ ଦେଖିଲା । ପ୍ରାୟ ସର୍କସ୍ ବିଷୟରେ ଯାହାସବୁ କଣ୍ଢେଇ ତା’ ଆଗରେ କହିଥିଲା ସେଇସବୁ ସେ ସ୍ୱପ୍ନରେ ଦେଖିଲା ।

ତେଣେ ଟୁଟିର ଚିଡ଼ିଆଖାନାର ଜଗୁଆଳ ପିସ୍ତଲ୍‌ଟିଏ ଧରି ଜଗିବସିଲା । ଜଗିବାବେଳେ ସେ ଅଳ୍ପ ନିଦରେ ଶୋଇପଡ଼ିଲା । ସେ ମଧ୍ୟ ସ୍ୱପ୍ନ ଦେଖିଲା ଯେ ଟୁଟିର କଣ୍ଢେଇ ତା’ ପାଖକୁ ଚାଲିଚାଲି ଆସୁଛି । ସେଠାରେ ଜଳୁଥିବା ଲଣ୍ଠନଟି ସେ ହାତରେ ଧରି ଚିଡ଼ିଆଖାନାର ଚାରିଆଡ଼େ ବୁଲୁଛି । ଡକ୍ଟର ଗାସ୍‌ପର୍ ଆର୍‌ନେରୀଙ୍କ ସଙ୍ଗେ ଆସିବାବେଳେ ସେ ଯେଉଁ ଗୋଲାପି ପୋଷାକ ପିନ୍ଧିଥିଲା, ତାକୁହିଁ ପିନ୍ଧିଛି । ମୁଣ୍ଡ ବାଳରେ ନାଲି ରିବନ ଭିଡ଼ିଛି । ଭାରୀ ସୁନ୍ଦର ଦିଶୁଛି କଣ୍ଢେଇଟି ।

ତାକୁ ସ୍ୱପ୍ନରେ ଦେଖି ଜଗୁଆଳଟି ଖୁସିରେ ହସୁଥାଏ ଏବଂ କଡ଼ ବୁଲାଇ ଆରାମରେ ଶୋଇବାକୁ ଚେଷ୍ଟା କଲା ସେ ।

ସୁଓକ୍ ଦେଖିଲା ଚାରିଆଡ଼େ ସମସ୍ତେ ଶୋଇଗଲେଣି । ଚିଡ଼ିଆଖାନାର ଜଗୁଆଳ ମଧ୍ୟ ଜୋର୍‌ରେ ଘୁଙ୍ଘୁଡ଼ି ଛାଡ଼ି ଶୋଇଗଲାଣି । ଲଣ୍ଠନଟି ତା’ ପାଖରୁ ଉଠେଇନେଇ ଧୀରେ ଧୀରେ ସେ ଆଗେଇଗଲା ।

ହଠାତ୍ ତା’ ନାକରେ ପଶୁର ଗନ୍ଧ ବାଜିଲା ।

‘‘ଓଃ, ମୁଁ ତେବେ ପଞ୍ଜୁରୀମାନଙ୍କ ପାଖରେ ପହଞ୍ଚିଯାଇଛି ।’’ ତା’ର ଛାତିଟା କ୍ଷଣକପାଇଁ ଧଡ଼୍‌ଧଡ଼୍ ହୋଇଗଲା । ତଥାପି ସେ ମନ ଟାଣ କଲା । ସେ ସର୍କସ୍‌ରେ ବାଘ-ସିଂହଙ୍କ ସାଙ୍ଗରେ ଖେଳୁଥିଲା । ଏ ପଞ୍ଜୁରୀ ଭିତରେ ଥିବା ପଶୁଗୁଡ଼ାକୁ ଦେଖି ସେ ଡରିବ କାହିଁକି ? ପ୍ରକୃତରେ ସେ ଡରୁଥିଲା ତା’ର ପାଦଶବ୍ଦ ଶୁଣି ଯଦି ପଶୁଗୁଡ଼ାକ ଉଠିପଡ଼ନ୍ତି କିମ୍ବା ଜଗୁଆଳ ଉଠିପଡ଼େ । ଧୀରେ ଧୀରେ ଲଣ୍ଠନ ଟେକି ସେ ପଞ୍ଜୁରୀଗୁଡ଼ାକୁ ଚାହିଁଲା ।

‘ପ୍ରସ୍ପେରୋ କେଉଁଠି ଅଛି କେଜାଣି ? ନା, ସବୁଥିରେ ତ କେବଳ ପଶୁପକ୍ଷୀ ଗୁଡ଼ାଏ ।

ପୁଣି ସେ ଆଗେଇଗଲା । ଗୋଟାଏ ପଞ୍ଜୁରୀରେ ଈଗଲ ପକ୍ଷୀଟିଏ ଶୋଇଥିବାର ସେ ଦେଖିଲା । ତା’

ବାଳୁଆ କାନ, ପଞ୍ଝା ଦେଖି ଯେକୌଣସି ସାନପିଲା ଡରିଯିବ । କିନ୍ତୁ ସୁଓକ୍ ତାକୁ ଟିକିଏ ଚାହିଁଦେଇ ପୁଣି ଆଗେଇଗଲା ।

ତା'ପର ପଞ୍ଜୁରୀରେ ଗୋଟାଏ ବଡ଼ ଶୁଆଟିଏ ରହିଥିଲା । ଯେ କି ଚୁପ୍‌ଚାପ୍ ସୁଓକ୍‌କୁ ଦେଖୁଥିଲା । କିନ୍ତୁ ସୁଓକ୍ ତା' ଆଡ଼େ ଚାହିଁବାବେଳେ ଶୋଇପଡ଼ିବାର ଛଳନା କରୁଥିଲା । ସତେ ଯେପରି ମନେହେଉଥିଲା ତା'ର ନାଲି ଦାଢ଼ୀ ତଳେ ଓଠ ଖୋଲି ସେ ଲୁଚେଇ ଲୁଚେଇ ହସୁଛି ତାକୁ ଚାହିଁ ।

ସୁଓକ୍ ଭାରୀ ବ୍ୟସ୍ତ ହୋଇ ପଡ଼ିଲାଣି । ପ୍ରସ୍ପେରୋ କେଉଁଠି ଅଛି ଜାଣି ନପାରି ତା' ମନ କଷ୍ଟ ଲାଗୁଛି । କିଏ ଜାଣେ ତାକୁ ଫାଶୀ ଦେଇଦେଲେଣି କି କ'ଣ । ଏତିକିବେଳେ କିଏ ମୋଟା ଗଳାରେ ଡାକିଲା, "ସୁଓକ୍ . . . ସୁଓକ୍ ।" ସୁଓକ୍‌ର ମନେହେଲା ସତେ ଯେପରି କିଏ ବଡ଼ ଜୋର୍‌ରେ ନିଶ୍ୱାସ ନେଉଛି କିମ୍ବା ଗୋଟିଏ ବୁଢ଼ା କୁକୁର ଅସୁସ୍ଥ ଅବସ୍ଥାରେ ଛଟପଟ ହେଉଛି । ଆଲୁଅ ଜଳେଇ ଶବ୍ଦ ଆସୁଥିବା ପଞ୍ଜୁରୀ ପାଖରେ ସେ ପହଞ୍ଚିଗଲା । ଧୀରେ ଡାକିଲା, "ପ୍ରସ୍ପେରୋ... ।" କିନ୍ତୁ ହଠାତ୍ ପଞ୍ଜୁରୀ ଭିତରକୁ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲା । "ଏ, ଏ ଏତେ ଅସୁନ୍ଦର କାହିଁକି ଦେଖା-ଯାଉଛି ? ଏଁ କ'ଣ ମଣିଷ ନା ଗୋଟିଏ ଗରିଲା ? ଗୋଟିଏ ଭାଲୁ ଭଳି ସେ ବାଳୁଆ ଦେଖାଯାଉଛି । ସୁଓକ୍‌ର ପାଟିକରି କାନ୍ଦିବାକୁ ମନହେଲା । ପଞ୍ଜୁରୀ ଭିତରେ ଜୀବଟି କହିଲା, "ମୁଁ ଜାଣିଥିଲି ତତେ ଥରେ ନିଶ୍ଚୟ ଦେଖିବି ।"

"ମୁଁ ତୁମକୁ ମୁକ୍ତ କରିବାକୁ ଆସିଛି ।" ସୁଓକ୍ କହିଲା ।

"ମୁଁ ଏ ପଞ୍ଜୁରୀ ଛାଡ଼ି ଯିବିନି । ମୁଁ ତ ମାତ୍ର ଅଳ୍ପକ୍ଷଣ ମଧ୍ୟରେ ମରିଯିବି । ସୁଓକ୍, ତୁ ମୋ' ପାଖକୁ ଟିକେ ଆସିଲୁ ।"

ସୁଓକ୍ ତା' ପାଖକୁ ଆସିଲା । ଗୋଟିଏ ଭୟଙ୍କର ମୁହଁ ତାକୁ ଚାହିଁରହିଥାଏ । ଗୋଟାଏ ବୁଢ଼ା ଗଧିଆ ତାକୁ ଚାହିଁ ରହିଥିବା ଭଳି ତା'ର ମନେହେଲା ।

ଭୟରେ ସେ ଆଖି ବୁଜିବାକୁ ଚେଷ୍ଟାକଲା । ତା' ହାତ ଥରି ଲଣ୍ଠନଟି ଖାଲି ନାଚୁଥିଲା । "ସୁଓକ୍, ତୁ ମତେ ଡରୁଛୁ ? ହଁ, ମୁଁ ଆଉ ମଣିଷଭଳି ଦିଶୁନି ? ଥାଉ ମା', ତୁ ମୋତେ ଦେଖି ଡରନା । ଟିକିଏ ମୋ' ପାଖକୁ ଆ । ତୁ କେତେବଡ଼ ହେଇଗଲୁଣି । କିନ୍ତୁ ଯା' ଭିତରେ ଭାରୀ ପତଳା ହୋଇଯାଇଛୁ । ତୋ'ର ମୁହଁଟି ଶୁଖିଯାଇଛି ।"

ସେ ଜୀବଟି ବଡ଼ କଷ୍ଟରେ ଏ କଥା କହିଲା । ପାଟି ମେଲାକରି ଜୋର୍‌ରେ ନିଶ୍ୱାସ ନେବାବେଳେ ତା'ର ହଳଦିଆ ହେଇଯାଇଥିବା ଦାନ୍ତସବୁ ଦେଖା-ଯାଉଥାଏ । ଅନ୍ଧାରରେ ସେ ତା'ର ମାଙ୍କଡ଼ ହାତ ପରି ହାତ ଦୁଇଟିରେ ସେ ପଞ୍ଜୁରୀ ଭିତରେ କ'ଣ



ଖୋଜି ହେଉଥାଏ । ଶେଷରେ ଖଣ୍ଡିଏ ଛୋଟ ପଟା ଆଣି ସୁଓକ୍ ହାତକୁ ବଢ଼େଇଦେଲା । କହିଲା, ''ଯା'କୁ ରଖିଥା । ଏଥିରୁ ତୁ ସବୁକଥା ଜାଣିବୁ ।'' ସୁଓକ୍ ପଟା-ଟିକୁ ତା' ଫ୍ରକ୍ ପକେଟ୍‌ରେ ଲୁଚେଇଦେଲା ।

''ପ୍ରସ୍ପେରୋ'' ସେ ଆସ୍ତେ ଡାକିଲା । କିନ୍ତୁ ଉତ୍ତର ଶୁଣାଗଲାନି । ସୁଓକ୍ ଦେଖିଲା, ସେ ଭୟଙ୍କର ଜୀବଟି ଆଁ ମେଲାକରି ସେଠାରେ ପଡ଼ିଯାଇଛି । ''ପ୍ରସ୍ପେରୋ ।'' ସେ କାନ୍ଦିପକାଇଲା । ତା' ହାତରୁ ଲଣ୍ଠନଟି ତଳେ ପଡ଼ିଗଲା । ''ଓହୋ । ପ୍ରସ୍ପେରୋ ତେବେ ସତ୍‌ରେ ମରିଗଲା ।'' ସୁଓକ୍ ସେମିତି କାନ୍ଦୁଥାଏ । ଲଣ୍ଠନଟି ଲିଭିଯିବାରୁ ଚାରିଆଡ଼ ଅନ୍ଧାର ହୋଇଗଲା ।

## ରୋଷେଇ ଘରେ ଯୁଦ୍ଧ

ପଶୁମାନଙ୍କର ଗଣ୍ଡଗୋଳ କରିବା ଶବ୍ଦରେ ଜଗୁଆଳର ନିଦ ଭାଙ୍ଗିଗଲା । ସୁଓକ୍ ଲଣ୍ଠନ ନେଇ ଚାଲିଯିବା ପରଠାରୁ ସେ ବହୁତ ନିଦରେ ଶୋଇ-ପଡ଼ିଥିଲା ।

ପଶୁମାନେ ଉଠିପଡ଼ି ପଞ୍ଜୁରୀ ଭିତରେ ଲାଙ୍ଗୁଳ ପିଟି ବିଭିନ୍ନ ଶବ୍ଦ କରୁଥିଲେ । ପକ୍ଷୀମାନେ ଡେଣା-ହଲାଇ ଫଡ଼୍‌ଫଡ଼୍ ହେଉଥିଲେ । ହଠାତ୍ ଜଗୁଆଳ ଲଣ୍ଠନଟି ଖୋଜି ପାଇଲାନି । ଉପରେ ଆକାଶରେ କେବଳ ତାରାମାନେ ଯାହା ଆଲୋକ ବିତରଣ କରୁଥିଲେ । ପଶୁପକ୍ଷୀମାନଙ୍କ ଶବ୍ଦ ଧୀରେ ଧୀରେ ଜୋର୍‌ରେ ଶୁଣାଯାଉଥିଲା । ଜଗୁଆଳଟି ସତର୍କ-ଘଣ୍ଟି ବଜାଇଲା । ଅଳ୍ପ ସମୟ ମଧ୍ୟରେ କେତେକ ଲୋକ ଟର୍ଚ୍ଚ ଧରି ତା' ପାଖକୁ ଧାଇଁଆସିଲେ । କିଏ ଲଣ୍ଠନ ନେଇ ଯାଇଛି ଭାବି ଜଗୁଆଳଟି ସେମାନଙ୍କୁ ଗାଳି-ଦେବାରେ ଲାଗିଲା । ଜଣେ ଖଣ୍ଡା ଧରି ତା' ଆଡ଼କୁ ଧାଇଁଗଲା । ସେ ଲୋକର ଖଣ୍ଡାରେ ଜଗୁଆଳର ନାକଟି ଖଣ୍ଡିଆଖାବରା ହୋଇଗଲା ।

''ତମମାନଙ୍କ ଭିତରୁ କିଏ ମୋ ଲଣ୍ଠନ ଚୋରେଇ ନେଲା କୁହ ।''

''କିଏ ବୋଧହୁଏ ଚିଡ଼ିଆଖାନା ଭିତରେ ପଶି-ଯାଇଛି ।''

''ଚୋରମାନେ ବୋଧହୁଏ ।''

''ହଁ, ହଁ ଚୋରମାନେ ନିଶ୍ଚୟ ।''

ଏମିତି ବହୁ ପ୍ରକାରର କଥାବାର୍ତ୍ତା ପରେ ସେମାନେ ଚିଡ଼ିଆଖାନା ଭିତର ଖୋଜିଲେ ଏବଂ କିଛି ସନ୍ଦେହଜନକ ଘଟଣା ଘଟିଥିବାର ଜାଣିପାରିଲେ-ନାହିଁ । କିନ୍ତୁ ବେଳକୁବେଳ ସିଂହମାନେ ଅସ୍ଥିରଭାବେ ଘୂରୁଥିଲେ । ବାଘମାନେ ତାଙ୍କର ମାଂସ ଆଘ୍ରାଣ କରିବା ନାକରେ ଆଉ କିଛି ଆଘ୍ରାଣ କରିବାକୁ ଚେଷ୍ଟା କରୁ-ଥିଲେ । ପକ୍ଷୀମାନେ ଫଡ଼୍‌ଫଡ଼୍ ହୋଇ ଉଡୁଥିବାରୁ ତାଙ୍କ ପଞ୍ଜୁରୀ ଗୁଡ଼ିକ କେବଳ ଘୂରୁଥିଲା । ମାଙ୍କଡ଼-ମାନେ ଡିଆଁଡେଇଁ କରୁଥିଲେ । ଭାଲୁମାନେ ମୋଟା ସ୍ୱରରେ ଗାଉଁ-ଗାଉଁ ହେଉଥିଲେ । ଲୋକମାନଙ୍କର ପାଟିତୁଣ୍ଡ, ଆଲୁଅ ପକାଇବା ଦେଖି ସେମାନେ ଆହୁରି ଡରିଗଲେ ।

ଜଗୁଆଳମାନେ ପ୍ରତ୍ୟେକ ପଞ୍ଜୁରୀ ଅନୁସନ୍ଧାନ କରିଥିଲେ ମଧ୍ୟ ତଳେ ପଡ଼ିଥିବା ଲଣ୍ଠନକୁ କେହି ଦେଖିପାରୁ ନଥିଲେ । ହଠାତ୍ ଜଣେ ଚିତ୍କାରକଲା :

''ଦେଖ, ଦେଖ ସେ ଗଛ ଉପରେ କିଏ ବସିଛି ।''

''ହଁ-ହଁ, ଗୋଲାପି ଦେଖାଯାଉଛି ।''

"ସାନ ଦେଖାଯାଉଛି ।"

"ଗଛର ସବା ଉପରେ ବସିଛି ।"

"ବୋକା କୋଉଠିକାର । ଗୋଟାଏ ଶୁଆ ପଞ୍ଜୁରୀରୁ ଉଡ଼ିଆସି ଗଛରେ ବସିଛି । ଏତିକି ଜାଣି-ପାରୁନ ।"

ଜଗୁଆଳମାନେ ନିଜ ନିଜ ଭିତରେ କଥାବାର୍ତ୍ତା କରୁଥିଲେ ।

"ତାକୁ ଆମେ ନେଇଆସିବା, ନଚେତ୍ ପଶୁ-ମାନେ ଆହୁରି ଗଣ୍ଡଗୋଳ କରିବେ ।"

"ଏ ବର୍ମ୍, ଯା . . . ଯା . . . ଗଛରେ ଚଢ଼ି ଶୁଆଟାକୁ ନେଇଆ ।" ଶେଷରେ ବର୍ମ୍ ନାମକ ସାନ ଜଗୁଆଳଟି ଗଛରେ ଚଢ଼ିଲା ।

"ଆହୁରି ଉପରକୁ ଉଠିଯା', ଶୁଆର ଦାଢ଼ୀଧରି ନେଇଆ ।" ଶୁଆଟି କିନ୍ତୁ ସେମିତି ସ୍ଥିରହୋଇ ବସି-ଥିଲା । କଳାପତ୍ର ମଧ୍ୟରେ ତା'ର ଗୋଲାପି ରଙ୍ଗଟି ପରିଷ୍କାର ଜଣାପଡୁଥିଲା । କାଳେ ଶୁଆଟି କାମୁଡ଼ିଦେବ ବୋଲି ବର୍ମ୍ ନିଜ ଟୋପିରେ ନାକକୁ ଘୋଡ଼େଇଦେଇ ଗଛରେ ଚଢ଼ିଲା ।

"ବୋକା, ଜଲ୍‌ଦି ଉପରକୁ ଚଢ଼ିଯା' ।"

ବର୍ମ୍ ସମସ୍ତଙ୍କ ପାଟି ଶୁଣି ଶୀଘ୍ର ଉପରକୁ ଉଠିଗଲା । କିନ୍ତୁ ଅଧାଯାଇ ପୁଣି ଓହ୍ଲେଇ ଆସି କହିଲା, "ମୁଁ କ'ଣ ଶୁଆମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ରହିଛି ଏଠି ?"

ଜଣେ ତାକୁ ମାରିବାକୁ ଦୌଡ଼ିଗଲା । ଏତିକି-ବେଳେ ପ୍ରଧାନ ପଶୁପକ୍ଷୀରକ୍ଷକର ନିଦ ଭାଙ୍ଗିଗଲା । ସେ ଚିତ୍କାର କଲା, "ହେ . . . ହେ, ତାକୁ ମାରନା, ତା' ସଙ୍ଗେ କେହି ଲାଗନା ।"

ଶୁଆର ଦାଢ଼ୀ ଧରି ସେମାନେ ନେଇଆସୁଥିଲେ ଶୁଣି ସେ ଭାରୀ ରାଗିଗଲା । ଶେଷରେ ସେ ନିଜେ ଗଛରେ ଚଢ଼ିଲା ଶୁଆଟିକୁ ନେଇ ଆସିବାକୁ । "ଇରେ ବାବା, ଏତ ଆମ ଶୁଆମାନଙ୍କର ରାଜା 'ଲରା' । ଲରା, ଏ ଲରା ଆ . . . ଆ ।" ସେ ତାକୁ ଚାହିଁ ଡାକିଲା । "ଲରାଟା ଭାରି ରାଗୀ, ସେ ତ କେବେ ପଞ୍ଜୁରୀରେ ରହିବାକୁ ଭଲ ପାଏନା ।"

ପ୍ରଧାନ ଜୀବଜନ୍ତୁରକ୍ଷକଟି ଗଛରେ ଚଢ଼ିବାକୁ ଆରମ୍ଭକଲା । କିନ୍ତୁ କିଛିବାଟ ଯାଇଛି କି ନାହିଁ ସେ "ଭୂତ . . . ଭୂତ" ଚିତ୍କାରକରି ଗଛରୁ ଓହ୍ଲେଇବାକୁ ଲାଗିଲା । ଏତେ ତରତର ହୋଇ ସେ ଓହ୍ଲେଇ ଆସିଲା ଯେ ଗଛରୁ ତା' ଗୋଡ଼ ଖସିଗଲା ଏବଂ ସାର୍ଟର ପଛଟା ଡାଳରେ ଲାଗିଯିବାରୁ ସେଇଠି ସେ ତଳକୁ ମୁହଁ କରି ବାଦୁଡ଼ିଭଳି ଡାଳରେ ଝୁଲିରହିଲା । ଜଗୁଆଳମାନେ ଡରରେ ଚିତ୍କାରକରି ସଙ୍ଗେ ସଙ୍ଗେ ସେ ସ୍ଥାନ ଛାଡ଼ି ପଳେଇଗଲେ । ଶେଷରେ ପଶୁପକ୍ଷୀମାନେ ମଧ ଶାନ୍ତ ହେଲେ ।

କିନ୍ତୁ ତିନି ମୋଟା ଲୋକ ଖବର ପାଇଲେ ଯେ ସହରରେ ଭୀଷଣ ଗଣ୍ଡଗୋଳ ଆରମ୍ଭ ହୋଇଯାଇଛି । ପ୍ରସ୍ପେରୋକୁ ନ ଛାଡ଼ିବାରୁ ଟିବୁଲ୍ ଲୋକମାନଙ୍କୁ ନେଇ ଗୋଟିଏ ସୈନ୍ୟଦଳ ଗଠନ କରିଅଛି ।

ତିନି ମୋଟା ଲୋକଙ୍କ ଦଳର କେତେକ ଜଗୁ-ଆଳ ମଧ ଯାଇ ସେ ଦଳରେ ମିଶିଯାଇଛନ୍ତି । ଏବେ ଦୁଇଦଳ ମଧରେ ଯୁଦ୍ଧ ଲାଗିବାରୁ ସମସ୍ତେ ଚିନ୍ତିତ । କିନ୍ତୁ ଯା'ଡ଼େ ତିନି ମୋଟା ଲୋକ ଦିନକୁ ଦିନ ବେଶୀ ମୋଟା ହେବାରେ ଲାଗିଛନ୍ତି । ଆଉ କୌଣସି ସାର୍ଟ-ପ୍ୟାଣ୍ଟ୍ ସେମାନେ ଭଲଭାବେ ପିନ୍ଧିପାରୁ ନଥିଲେ । ସବୁଗୁଡ଼ାକ ଅତି କଷ୍ଟରେ ଦେହରେ ପଶୁଥାଏ । ଏକଥା ଶୁଣି ସବୁଠାରୁ ବଡ଼ ଅଫିସର୍ ଠିକ୍ କଲେ ଯେ ସେମା-

ନଙ୍କର ଦେହର ଓଜନ କମେଇବା ପାଇଁ ବ୍ୟାୟାମ କରିବା ଉଚିତ ।

"ତେବେ ନାଚ ଶିଖିଲେ ସବୁଠାରୁ ଭଲ ହେବ," କିଏ ଜଣେ କହିଲା । ସମସ୍ତେ ସେ କଥା ସମର୍ଥନ କଲେ । ଏଥର ନାଚ ଶିଖେଇବାପାଇଁ ନାଚ ମାଷ୍ଟର ଖୋଜିଯିବାପାଇଁ ସ୍ଥିର କରାହେଲା ।

ଠିକ୍ ସେମାନଙ୍କର କଥାବାର୍ତ୍ତା ଚାଲିବାବେଳେ ହଠାତ୍ ସେ ଜୀବଜନ୍ତୁରକ୍ଷକର ବିକଳ ଚିତ୍କାର ଶୁଣାଗଲା । କଥାବାର୍ତ୍ତା ବନ୍ଦକରି ମନ୍ତ୍ରୀ ଓ ଅଫିସର୍‌ମାନଙ୍କ ମଧ୍ୟରୁ କେତେଜଣ ଟର୍ଚ୍ଚ ଇତ୍ୟାଦି ଧରି ଚିଡ଼ିଆଖାନା ଆଡ଼େ ଦୌଡ଼ିଗଲେ ।

ବଗିଚାସାରା କମଳା ଓ ବାଦାମୀରଙ୍ଗର ପ୍ରଜାପତିମାନେ ସେମାନଙ୍କର ଛୁଆପିଲା ଓ ସାଙ୍ଗ ପ୍ରଜାପତିମାନଙ୍କୁ ଧରି ଡରରେ ଉଡ଼ି ବୁଲୁଥିଲେ । ଏତିକିବେଳେ ସମୁଦ୍ରର ଢ଼ୁଆର ଭଳି ଟର୍ଚ୍ଚର ଆଲୋକ ଜଳି ଉଠିଲା ।

ଚିଡ଼ିଆଖାନାର ଦଶଗଜ ଦୂରରେ ସେମାନେ ସମସ୍ତେ ଆଗକୁ ନ ଯାଇ ଡରରେ ମୂର୍ତ୍ତି ଭଳି ଠିଆହୋଇ ରହିଲେ । ସେମାନେ ଭୟରେ ପରସ୍ପର ପରସ୍ପର ଦେହରେ ବାଡ଼େଇ ହୋଇଗଲେ । ସମସ୍ତଙ୍କ ପାଟିରୁ କେବଳ, 'ଉଃ-ଆଃ', 'ରକ୍ଷାକର' ଇମିତି ଶବ୍ଦ ବାହାରୁଥିଲା । ସେମାନଙ୍କ ଚିତ୍କାରରେ ବଗିଚାଟି କମ୍ପିଉଠିଲା ।

ଲୁହାବାଡ଼ ଭିତରେ ଜଣେ ଖୁବ୍ ବଡ଼ ମଣିଷ ଧୀରେ ଧୀରେ ଆସୁଥିଲା । ସେ ଗୋଟାଏ ହାତରେ ଲୁହା ଚେନ୍‌ରେ ବନ୍ଧା ହୋଇଥିବା ଏକ ବିରାଟ ବାଘକୁ ଧରିଥିଲା । ଯଦିବା କିଏ ସାହସକରି ପଛକୁ ଚାହିଁଥିବ ସେ ଦେଖିଥିବ ଯେ ସେ ଲୋକ ଅନ୍ୟବାହୁରେ ଗୋଟିଏ ଛୋଟ ଝିଅକୁ କାଖେଇଥିଲା । ଝିଅଟି ତା'ର ଗୋଲାପ କଢ଼ିଥିବା ଚଟି ଦୁଇଟିକୁ ଉପରକୁ ଉଠେଇ ରଖିଥିଲା ଏବଂ ତା'ର ବନ୍ଧୁର କାନ୍ଧରେ ମୁହଁ ଲୁଚେଇ ଦେଇଥିଲା ।

"ଦେଖ, ଦେଖ, ପ୍ରଫେସରୋ ଲୁହା ପଞ୍ଜୁରୀରୁ ବାହାରିଆସିଛି ।"

"ହଁ, ହଁ ପ୍ରଫେସରୋ ନିଶ୍ଚୟ ।"

"ଓହୋ ! ରକ୍ଷାକର . . . ରକ୍ଷାକର ।"

"ଆରେ ଦେଖ, ସେଇ ବିଖ୍ୟାତ କଣ୍ଢେଇଟି ପ୍ରଫେସରୋ କାନ୍ଧରେ"– ପଳେଇ ଯାଉ ଯାଉ ସେହି ଅଫିସର୍‌ମାନେ ଏମିତି ଚିତ୍କାର କରୁଥିଲେ । ପ୍ରଫେସରୋ ସେହି ବାଘଟିକୁ ଲୋକମାନଙ୍କ ପଛରେ ଦଉଡ଼େଇ ଦେଲା ।

ସେ ଲୋକମାନେ ବାପଲୋ, ମାଆଲୋ ଚିତ୍କାର କରି ଦୌଡ଼ି ପଳାଇଲେ । ଏତିକିବେଳେ ସୁଓକ୍ ପ୍ରଫେସରୋ କାନ୍ଧରୁ ଡେଇଁପଡ଼ି ତଳେ ସେଇ ଲୋକମାନେ ଛାଡ଼ିଯାଇଥିବା ପିସ୍ତଲ ମଧ୍ୟରୁ ଦୁଇ ତିନୋଟି ଉଠାଇ ନେଲା । ସର୍କସ୍‌ରେ ତା'ର ପିସ୍ତଲ୍ ମାରିବା ଅଭ୍ୟାସଥିଲା । ତେଣୁ ଦରକାରବେଳେ କାମରେ ଆସିବ ଭାବି ସେଗୁଡ଼ିକୁ ସେ ଭଲଭାବେ ଧରି ଚାଲିଲା ।

"ଚାଲ, ଶୀଘ୍ର ପଳେଇବା"– ସୁଓକ୍ ପ୍ରଫେସରୋକୁ ମନେପକାଇଦେଲା । ସେମାନଙ୍କର ଆଉ ଭାବିବାର ବେଳ ନଥିଲା ଯେ ବଗିଚା ଭିତରେ କ'ଣ ଚାଲୁଛି କିମ୍ବା ସେ ରାଗିଥିବା ବାଘଟି କ'ଣ କରୁଛି ।

ସେମାନେ ଅତିଶୀଘ୍ର ଉଆସର ରୋଷେଇ ଘରଆଡ଼େ ଚାଲିଲେ । ଅନ୍ଧାରିଆ ବଗିଚା ଭିତରେ ଯାଇ ସେମାନେ ଗୋଟିଏ ଗଛରେ ଚଢ଼ି ତା'ର ଡାଳରେ ଓହଳି ଓହଳି ଅନେକବାଟ ଚାଲିଗଲେ । ତା'ପରେ ଖୁବ୍ ଅଳ୍ପ ସମୟ ମଧ୍ୟରେ ସେମାନେ ରୋଷେଇଘର ଝରକା ପାଖରେ ପହଞ୍ଚିଗଲେ । ଇଆଡ଼େ ଆଉ ଦଳେ

ଢଗୁଆଳ ତାଙ୍କ ପଛରେ ଦୌଡ଼ିବାକୁ ଆରମ୍ଭକଲେଣି ।

କିନ୍ତୁ ଗୋଟାଏ ମୁହୂର୍ତ୍ତରେ ସେମାନେ ରୋଷେଇ-ଘର ପାଖରେ ପହଞ୍ଚଗଲେ । ଝରକା ଦେଇ ବେଲୁନ୍-ବାଲାଟି ସେଦିନ ସେଇ ରୋଷେଇଘରେ ପହଞ୍ଚି ଯାଇ-ଥିଲା । ସୁଓକ୍ ଆଗରୁ ସବୁ ଜାଣିଥିବାରୁ ତା'ର ପହଞ୍ଚିବାରେ ଅସୁବିଧା ହେଲାନାହିଁ ।

ସେତେବେଳେ ପୂଝାରୀମାନେ ଓ ତାଙ୍କୁ କାମରେ ସାହାଯ୍ୟ କରୁଥିବା ରୋଷେୟା ବାଳକମାନେ ଗୋଟିଏ ଭୋଜିପାଇଁ ଖାଦ୍ୟ ପ୍ରସ୍ତୁତ କରୁଥିଲେ । ଟୁଟିର କଣ୍ଢେଇ ଫେରିଆସିଥିବାରୁ ବହୁ ବିଶିଷ୍ଟ ଅତିଥିମାନଙ୍କୁ ବାହାରୁ



ନିମନ୍ତ୍ରଣ କରାଯାଇଥିଲା ।

ପ୍ରସ୍ପେରୋ ଓ ସୁଓକ୍ ସେଠାରେ ପହଞ୍ଚିଥିଲେ । ସୁଓକ୍ ଗୋଟିଏ ବଡ଼ ଯୁଦ୍ଧର ସେନାପତି ଭଳି ପିସ୍ତଲ୍ ଧରି ଆଦେଶଦେଲା, "ସମସ୍ତେ ହାତ ଉପରକୁ ଟେକି ଠିଆହୋଇ ରୁହ । ନଚେତ୍ ଆମେ ଗୁଳିକରି ସମସ୍ତଙ୍କୁ ମାରିଦେବୁ । ଦେଖ, ଟିକିଏ ବି ହଲିବନାହିଁ ।" ପୂଜାରୀ ଓ ସାହାଯ୍ୟକାରୀ ବାଳକମାନେ ଡରରେ ହାତ ଉପରକୁ ଟେକି ଠିଆହୋଇ ରହିଲେ ।

ସୁଓକ୍ ଓ ପ୍ରସ୍ପେରୋ ଦୁହେଁ ସେଠାରେ ଥିବା ସମସ୍ତ ବଡ଼ ବଡ଼ ହାଣ୍ଡିର ମୁହଁ ଓଲଟେଇ ତଳକୁ ଫୋପାଡ଼ିଦେଲେ । ଖୁବ୍ ସୁନ୍ଦର ସୁନା, ରୁପା ଓ କାଚର ବାସନ ଇତ୍ୟାଦି ଭାଙ୍ଗି ଚୂନା ହୋଇଗଲା । ଯେଉଁ ପିତଳ ହାଣ୍ଡିର ମୁହଁ ଖୋଲିଲେ ବାହାରକୁ ବାହରି-ଯିବାର ସୁଡଙ୍ଗ ରାସ୍ତା ଦେଖାଯାଏ, ବଡ଼ କଷ୍ଟରେ ସୁଓକ୍ ସେଇଟା ଖୋଜି ପାଇଲା ।

ପ୍ରସ୍ପେରୋ ତରତର କରି ସେ ଖୋଲା ହାଣ୍ଡିବାଟେ ସୁଡ଼ଙ୍ଗ ରାସ୍ତାକୁ ଓହ୍ଲାଇଗଲା । ସୁଓକ୍ ମଧ ଶୀଘ୍ର ଚାଲିଯିବାପାଇଁ ଚେଷ୍ଟା କରୁଥିଲା । ଏତିକିବେଳେ ସେ ବାଘଟା ସେଇଆଡ଼େ ଦୌଡ଼ିଆସି ପ୍ରସ୍ପେରୋ ପଛରେ ଧାଇଁଗଲା । ଦୌଡୁଥିବା ଜଗୁଆଳମାନେ ଆଉ ପ୍ରସ୍ପେରୋ ପଛରେ ନ ଧାଇଁ ସୁଓକ୍‌କୁ ଧରି-ପକାଇଲେ । ଏତିକିବେଳେ ସୁଡ଼ଙ୍ଗ ରାସ୍ତାରେ ବନ୍ଧୁକ ଫୁଟିବା ଆବାଜ୍ ଶୁଣାଗଲା । ତା'ପରେ ବାଘଟା ଗର୍ଜନ ଛାଡ଼ି ମରିଗଲା । ସୁଓକ୍ ଆନନ୍ଦରେ ପାଟିକଲା, "ପ୍ରସ୍ପେରୋ ବଞ୍ଚିଯାଇଛି, ବଞ୍ଚିଯାଇଛି ।"

ଜଗୁଆଳମାନେ ତାକୁ ଧରିନେଇ ଯାଉ ଯାଉ କହିଲେ, "ରହ ରହ କଣ୍ଢେଇ, ତତେ ଏବେ ଫାଶୀ ଦିଆଯିବ ।"

ସୁଓକ୍ କହିଲା, "ଭାକ୍ ବୋକା ।" କହି ପକେଟ୍‌ରେ ଥିବା କିଛି କୋଳି ସେ ସେମାନଙ୍କ ଉପରକୁ ଫୋପାଡ଼ିଲା ।

## ଏକ-ଦୁଇ-ତିନ୍ ନାଚ୍‌ମାଷ୍ଟର

ଆମେ ଏପର୍ଯ୍ୟନ୍ତ ସେ ଜାଣା କଣ୍ଢେଇଟି କୁଆଡ଼େ ଗଲା ଏବଂ କି ପ୍ରକାର ଶୁଆ ଗଛରେ ବସିଥିଲା ଯେ ତାକୁ ଦେଖି ଏମାନେ ଭୂତ ବୋଲି ଭାବିଲେ, ତା'ଛଡ଼ା ପ୍ରସ୍ପେରୋ କିପରି ପଞ୍ଜୁରୀ ଭିତରୁ ବାହାରି ଆସିଲା, ସୁଓକ୍‌କୁ କିପରି ପ୍ରସ୍ପେରୋ କାନ୍ଧରେ ନେଇଆସିଲା – ଏସବୁ କଥା କିଛି ଜାଣିନାହୁଁ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ, ସେହି ଭୟଙ୍କର ଜୀବଟି କିଏ ଯେ କି ସୁଓକ୍‌କୁ ନାଁ ଧରି ଡାକି ଗୋଟିଏ ସାନ କାଠପଟା ଦେଇଥିଲା । ଏଇ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଠିକ୍ ସମୟରେ ନିଶ୍ଚୟ ଦିଆଯିବ ।

ସକାଳ ହେଲା । ପ୍ରତ୍ୟେକ ଲୋକ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ ଥିଲେ । କିନ୍ତୁ ଏଇ ସକାଳେ ଏକ୍-ଦୁଇ-ତିନ୍ ନାଚ୍‌ମାଷ୍ଟରର ନାଚ୍‌ଘରେ ଭାରି ଭିଡ଼ ହୋଇଥିଲା । ସମସ୍ତେ ମନଖୁସିରେ ନାଚୁଥିଲେ । ହଠାତ୍ ଘୋଡ଼ାରେ ଚଢ଼ି ତିନି ମୋଟା ଲୋକଙ୍କର ଜଣେ ଜଗୁଆଳ ସେଠାରେ ପହଞ୍ଚିଲା । ତା'ର କାରଣ, ସେ ଖବର ନେଇ ଯାଇଥିଲା ଯେ ଏକ୍-ଦୁଇ-ତିନ୍ ମାଷ୍ଟରଟି ତିନି ମୋଟା ଲୋକଙ୍କୁ ନାଚ୍ ଶିଖେଇବା ପାଇଁ ଉଆସକୁ ଯିବ ।

ଏ କଥା ଶୁଣି ନାଚ୍ ମାଷ୍ଟର ସୁନ୍ଦର ବେଶ-ପୋଷାକ, ଗୀତ ଖାତା ଏବଂ କେତୋଟି ନିଜର ସୌଖୀନ୍ ଜିନିଷ ସଜାଡ଼ି ଖୁବ୍ ମନଖୁସିରେ ଯିବାପାଇଁ ପ୍ରସ୍ତୁତ ହୋଇଗଲା । ତିନି ମୋଟା ଲୋକଙ୍କୁ ସେ ନାଚ୍



ଶିଖେଇବ । ଅନେକ ଟଙ୍କା ମଧ୍ୟ ମିଳିବ । ଏଇ କଥା ଭାବି ତା'ର ମନ ଭାରି ଖୁସ୍ । ଢଗୁଆଳ ସଙ୍ଗେ ଘୋଡ଼ାରେ ବସି ସେ ତିନି ମୋଟା ଲୋକଙ୍କ ଉଆସକୁ ଚାଲିଲା । କିନ୍ତୁ ରାସ୍ତାରେ ଭୀଷଣ ଗଣ୍ଡଗୋଳ । ପିଲା ବଡ଼ ସମସ୍ତେ ଚିତ୍କାର କରୁଛନ୍ତି, "ଆମ ପ୍ରସ୍ପେରୋ ଫେରିଆସିଛି । ପ୍ରସ୍ପେରୋ ଭାଇ ଜିନ୍ଦାବାଦ୍ ।"

ଢଗୁଆଳଟି ଘୋଡ଼ା ଦୌଡ଼ାଇ ଅନ୍ୟବାଟେ ଚାଲିଯିବାକୁ ବସିଲା । ଏତିକିବେଳେ ଆଉ ଦଳେ ଗାର୍ଡ଼ ସେଠାରେ ଆସି ପହଞ୍ଚିଲେ । ସେମାନେ ଆଦେଶ-ଦେଲେ, "ହେ କିଏ ଯାଉଛ ? ରୁହ, ସେଇଠି ।"

ନାଚ ମାଷ୍ଟରକୁ ନେଇଯାଉଥିବା ଢଗୁଆଳଟି ରାଗିଯାଇ କହିଲା, "ମୁଁ କିଏ ତୁମେମାନେ କ'ଣ ଜାଣିନ ? ମୁଁ ପରା ଉଆସର ଜଣେ ଢଗୁଆଳ ।" ଆଦେଶ କରୁଥିବା ଢଗୁଆଳଟି ବେଲ୍‌ଟ୍‌ରୁ ପିସ୍ତଲ୍ ବାହାରକରି ତା'କୁ ସଙ୍ଗେ ସଙ୍ଗେ ଗୁଳି କରି ମାରିଦେଲା ।

ଏକ-ଦୁଇ-ତିନ୍ ନାଚମାଷ୍ଟର ଏସବୁ ଦେଖି ଅଚେତ ହୋଇ ସେଠାରେ ପଡ଼ିଗଲା । ତା'ର ପ୍ରିୟ ଜିନିଷ ସବୁ ସେଠାରେ ଖେଳାଖେଳି ହେଇ ସେମିତି ପଡ଼ିରହିଲା । ସେହି ଜିନିଷ ମଧ୍ୟରୁ ଖୋଜିଲା ଭଳି ଗୋଟିଏ ସୁନ୍ଦର ଗୋଲାପି ରଙ୍ଗର ଜିନିଷଟିଏ ଜଣେ

ଜଗୁଆଳ ଛାତିରେ ଢାକିନେଇ ଘୋଡ଼ା ଦଉଡ଼ାଇ ଚାଲିଗଲା ।

## ବିଜୟ

ଯେଉଁ ରାତିରେ ପ୍ରସ୍ପେରୋ ସେଠାରୁ ଚାଲିଗଲା ଏବଂ ସୁଓକ୍‌କୁ ଦଳେ ଜଗୁଆଳ ଧରିନେଇ ଗଲେ, ଠିକ୍ ସେଇ ରାତିରେ ତିନୋଟି ଲୋକ ଟୁଟିର ଶୋଇବା ଘରଭିତରକୁ ପଶିଆସିଲେ । ସେମାନେ ଗୋଟିଏ ହାତରେ ଔଷଧ ବୋତଲଟିଏ ଧରି ଟୁଟିର ବିଛଣା ପାଖକୁ ଆଗେଇଗଲେ । ତା' କାନରେ କେତେଟୋପା ପକେଇଦେଇ ଖୁବ୍ ଶୀଘ୍ର ସେମାନେ ସେ ସ୍ଥାନ ଛାଡ଼ି ଚାଲିଗଲେ ।

ସେମାନେ ଯିବାପୂର୍ବରୁ କଥାବାର୍ତ୍ତା କରୁଥିଲେ, "ଏଥର ଆଉ କିଛି ଚିନ୍ତାନାହିଁ ।" ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ଟୁଟି ବେଶ୍ ନିଦରେ ଶୋଇପାରିବ । ସେମାନେ ଅତି ସାବଧାନରେ ଦଶଟୋପା ମାତ୍ର ଔଷଧ ପକାଇଥିଲେ । ଟୁଟିର ଶିକ୍ଷକ ଲୁଚିରହି ସବୁ ଦେଖିଲେ, କିନ୍ତୁ ଭୟରେ ଥରିବା ବ୍ୟତୀତ ତାଙ୍କର ଆଉ କିଛି ଉପାୟ ନଥିଲା ।

ଏଥର ଆମେ ଦେଖିବା ସୁଓକ୍‌କୁ ଧରିନେଇ ସେମାନେ କ'ଣ କଲେ । ପ୍ରଥମେ ସେମାନେ ଭାବିଲେ ତାକୁ ଗୋଟିଏ ଅନ୍ଧାରିଆ ଘରେ ପକାଇଦେବେ । କିନ୍ତୁ ପରେ ଭାବିଲେ, ନା ବରଂ ଶୀଘ୍ର ଫାଶୀ ଦେଲେ ଭଲ ହେବ । କାଳେ ଟୁଟି ଜାଣିଲେ ସୁଓକ୍‌କୁ ଫାଶୀଦେବା ବନ୍ଦ ହୋଇଯିବ ସେଥିପାଇଁ ତିନି ମୋଟା ଲୋକଙ୍କ ଅଫିସର୍‌ମାନେ ଟୁଟିକୁ ଔଷଧ ଦେଇ ଶୁଆଇ-ପକାଇଲେ । ତେଣେ ସୁଓକ୍‌କୁ କେତେଜଣ ଜଗୁଆଳ ଗୋଟିଏ କୋଠରୀରେ ଜଗିରହିଲେ । ମାତ୍ର ଅଳ୍ପ କେତେଜଣ ଜଗୁଆଳଙ୍କୁ ଛାଡ଼ିଦେଲେ ସମସ୍ତେ ପ୍ରସ୍ପେରୋ ଓ ଟିବୁଲ୍ ଦଳରେ ଯୋଗଦେଇ ସାରିଥିଲେ । ସେଇ କେତେଜଣ ସୁଓକ୍‌କୁ ଜଗିବସିଥିଲେ । ବିଚାରୀ ସୁଓକ୍ ଚୁପ୍‌ଚାପ୍ ବସି କେବଳ ଭାବୁଥିଲା ଯେ ପ୍ରସ୍ପେରୋ ଓ ଟିବୁଲ୍ ସେଠାକୁ ଆସି ନିଶ୍ଚୟ ଶୀଘ୍ର ତାକୁ ରକ୍ଷାକରିବେ ।

ଏକ-ଦୁଇ-ତିନ୍ ନାଚ ମାଷ୍ଟରକୁ ନେଇଆସୁଥିବା ଜଗୁଆଳିକୁ ଯେଉଁମାନେ ମାରିଦେଇଥିଲେ, ପୋଷାକ ବଦଳାଇ ସେମାନେ ପୁଣି ସୁଓକ୍‌କୁ ଜଗିବସିଥିବା ଜଗୁଆଳମାନଙ୍କ ସଙ୍ଗେ ମିଶିଯାଇଥିଲେ । ଏତିକିବେଳେ ସବୁଠାରୁ ଯେ ବଡ଼ ଅଫିସର୍ ସେ ସେଇ କୋଠରୀରେ ପହଞ୍ଚିଲେ । ତାଙ୍କୁ ଦେଖି ସବୁ ଜଗୁଆଳମାନେ ସମ୍ମାନରସହ ସିଧାହୋଇ ଠିଆହୋଇଗଲେ । ଆଖିରୁ ଚଷମା ଖୋଲି ସେ ପଚାରିଲେ, "ସେ ଝିଅଟା କୁଆଡ଼େଗଲା ?"

ସୁଓକ୍ ପ୍ରଧାନ ଜଗୁଆଳଙ୍କ ନିର୍ଦ୍ଦେଶରେ ବସିବା ସ୍ଥାନରୁ ଓହ୍ଲାଇଆସିଲା । ସେ ଜଗୁଆଳ ଜଣଙ୍କ ତା' ଅଣ୍ଟାପାଖ ବେଲ୍ଟକୁ ଜୋର୍‌ରେ ଧରି ତାକୁ ଟେକି-ନେଇଗଲେ । "ତିନି ମୋଟା ଲୋକ ଅପେକ୍ଷା କରି-ବସିଛନ୍ତି ବିଚାରଘରେ । ସାଥିରେ ଯା'କୁ ନେଇକରି ଆସ ।" ବଡ଼ ଅଫିସର ଜଣକ କହିଲେ । ତାଙ୍କଠାରୁ ଆଦେଶ ପାଇ ଜଗୁଆଳମାନେ ସୁଓକ୍‌କୁ ନେଇ ତାଙ୍କ ପଛେ ପଛେ ଚାଲିଲେ ।

ସୁଓକ୍‌ର ଗୋଲାପି ସିଲ୍‌କ ପୋଷାକ ଓ ସୁନେଲି ଗୋଲାପ ପାଖୁଡ଼ା ଥିବା ଚଟିର ଅବସ୍ଥା ସେଇ ଜଗୁ-ଆଳମାନଙ୍କ ନିଷ୍ଠୁର ହାତରେ ନଷ୍ଟ ହୋଇଯାଇଥିଲା । ଏମିତି ଟେକିନେବାଦ୍ୱାରା ତାକୁ ଏତେ କଷ୍ଟ ଲାଗିଲା ଯେ ସେ ଟେକିନେଉଥିବା ଜଗୁଆଳର ବାହୁକୁ

ଜୋର୍‌ରେ ଚିମୁଟିଦେଲା । ବଡ଼ ଜଗୁଆଳ ବିରକ୍ତିରେ ପାଟିକରି ତାକୁ ତଳେ ଛାଡ଼ିଦେଲା । ବଡ଼ ଅଫିସର୍ ପଚାରିଲେ, "ଏ କ'ଣ ହେଲା ?"

ଠିକ୍ ସେତିକିବେଳେ ବଡ଼ ଅଫିସର୍‌ଙ୍କ ପିଠିରେ କିଏ ଜୋର୍‌ରେ ଗୋଟାଏ ବିଧା ବସେଇଲା । ସେତେ-ବେଳେ ଅନ୍ଧାର ରାତି । ଏତିକିବେଳେ ସୁଓକ୍‌କୁ କିଏ ଜଣେ ଉଠେଇ ନେଇ ତା' କାନପାଖରେ କହିଲା, "ଦେଖ ଝିଅ, ତୁ ମୋତେ ଡରନା ।"

ତିନି ମୋଟା ଲୋକ ସେତେବେଳେ ଧୈର୍ଯ୍ୟ-ହରାଇ ସାରିଥିଲେ । ସେଇ ଚାଲାକ୍ କଣ୍ଢେଇକୁ ସେମାନେ ନିଜେ ପରୀକ୍ଷାକରି ଦେଖିବେ ବୋଲି ଅପେକ୍ଷା କରିଥିଲେ ।

ଶେଷରେ ବିଚାର ଘରର କବାଟ ଠେଲି ଜଗୁ-ଆଳମାନେ ପଶିଆସିଲେ । ଜଣେ ଜଗୁଆଳ କାନ୍ଧରେ ସାନ ଝିଅଟି ଶୋଇରହିଥାଏ । ତା'ର ଆଖି ଜ୍ୟୋତିହୀନ ଦିଶୁଥାଏ । ସିଲ୍‌କ ପୋଷାକ ଚିରିଥାଏ । ମୁହଁ ଶୁଖି-ଯାଇଥାଏ । ତିନି ମୋଟା ଲୋକ ପଚାରିଲେ, "ବଡ଼ ଅଫିସର୍ କାହାନ୍ତି ?" ଜଣେ ନୀଳ ଆଖିର ଜଗୁଆଳ କହିଲା, "ବାଟରେ ତାଙ୍କର ପେଟ ମାରିବାରୁ ସେ ଆସିଲେନାହିଁ ।" ସେ ବିଷୟରେ ଆଉ କେହି ମୁଣ୍ଡ ଖେଳାଇଲେ ନାହିଁ ।

ସୁଓକ୍‌ର ବିଚାର ଆରମ୍ଭ ହେଲା । ଆଶ୍ଚର୍ଯ୍ୟ କଥା, ତାକୁ ଯେତେ ପ୍ରଶ୍ନ ପଚାରିଲେ ବି ସେ କୌଣସି ଉତ୍ତର ଦେଲାନାହିଁ । ସେମିତି ତଳକୁ ମୁଣ୍ଡ ନୁଆଁଇ ବସିରହିଲା ।

"ସାକ୍ଷୀକୁ ଆଣ ।" ତିନି ମୋଟା ଲୋକଙ୍କ ଆଦେଶରେ ସେମାନେ ପଶୁପକ୍ଷୀଙ୍କ ଦାୟିତ୍ୱରେ ଥିବା ଲୋକଟିକୁ ଆଣିଲେ । ସେ ସୁଓକ୍‌କୁ ଭୂତ ଭାବି ଭୀଷଣ ଡରୁଥିଲା । ସେ ଯାହା ଜାଣିଥିଲା ସବୁ କହିଲା । ପ୍ରସ୍ପେରୋ କିପରି ମୁକ୍ତ ହେଲା ସେ କଥା କହିପାରିଲା ନାହିଁ । ସୁଓକ୍‌କୁ ଯେତେ ପଚାରିଲେ ମଧ୍ୟ ସେ କିଛି



କହିପାରିଲା ନାହିଁ । ''ତାକୁ ମାଡ଼ ଦିଅ ।'' ତିନି ମୋଟା ଲୋକ ଚିତ୍କାର କଲେ । ତାକୁ ସଙ୍ଗେ ସଙ୍ଗେ ଜୋର୍‌ରେ ମାଡ଼ ଦେଲେ ବି ସେ କିଛି ନ କହି ମୁଣ୍ଡ ନୁଆଁଇ ବସି-ରହିଲା ।

ହଠାତ୍ ଜୀବଜନ୍ତୁରକ୍ଷକ ପାଟିକରି କହିଲା, ''ମୁଁ କହିବି କେମିତି ସବୁ ଜଣାଯିବ । ଚିଡ଼ିଆଖାନାରେ ଗୋଟିଏ ପଞ୍ଜୁରୀରେ ଶୁଆଟିଏ ଅଛି । ସେ ଶୁଣି ସବୁ ଭଲ ଭାବରେ ମନେ ରଖିପାରେ ।'' ଜୀବଜନ୍ତୁ ରକ୍ଷକ ଶୁଆଟିକୁ ଆଣିଲା । ଶୁଆଟି ଏକଦମ୍ ବୁଢ଼ା ଓ ତାର ନାଲିଆ ଦାଢ଼ୀ ବେଶ୍ ଲମ୍ବା ।

ତୁମର ମନେଥିବା ଗୋଟିଏ ଶୁଆ ଚିଡ଼ିଆ-ଖାନାରେ ସୁଓକ୍‌କୁ ଦେଖି ହସୁଥିଲା ଓ ସନ୍ଦେହଜନକ ଭାବରେ ଚାହୁଁଥିଲା । ତା' ନାଁ 'ଲରା' । ସେ ଶୁଆକୁ ସୁଓକ୍ ପାଖକୁ ନିଆଗଲା । ତାକୁ ଦେଖି ସେ ଡେଣାଝାଡ଼ି କହିଲା, ''ସୁଓକ୍, ସୁଓକ୍ ।''

''ତୁ କିଏ ?'' ଶୁଆଟି ମଣିଷ ସ୍ୱରରେ କହିଲା ।

''ମୁଁ ସୁଓକ୍ ।'' ସାନ ଝିଅଟିର ସ୍ୱରରେ ସେ ନିଜେ ଉତ୍ତର ଦେଲା ଏବଂ କହିଚାଲିଲା . . .

: ସୁଓକ୍ !

: ଟିବୁଲ୍ ମତେ ପଠେଇଛି । ମୁଁ କଣ୍ଢେଇ ନୁହଁ, ମୁଁ ତୁମକୁ ମୁକ୍ତିଦେବାକୁ ଆସିଛି । ମତେ ତୁମେ ଦେଖିନ । ମୁଁ ପରା ଏ ଚିଡ଼ିଆଖାନାରେ ତୁମକୁ ଖୋଜିବୁଲୁଛି ।

: ମୁଁ ତ କେବେ ଶୋଇ ନଥିଲି । ଆଜି ବୋଧହୁଏ ଶୋଇପଡ଼ିଲି ।

: ମୁଁ ତୁମକୁ ବହୁତ ଖୋଜିଲି । ମୁଁ ଏକ ଅଦ୍ଭୁତ ଜୀବକୁ ଦେଖିଲି । ସେ ମତେ ମଣିଷ ସ୍ୱରରେ ଡାକିଲା । ମୁଁ ଭାବିଲି ସେ ତୁମେ । କିନ୍ତୁ ସେ ମରିଗଲା ?

: ସେ ହେଉଛି ଟୁଟ୍ । ସେ ମରିଗଲା ?

: ହଁ, ମୁଁ ଡରରେ ଚିତ୍କାର କଲି । ଜଗୁଆଳମାନେ ଦୌଡ଼ି ଆସିଲେ । ମୁଁ ଭାରି ଖୁସୀ ଯେ ତୁମେ ବଞ୍ଚିଛ । ମୁଁ ତୁମକୁ ମୁକ୍ତି ଦେବି ।

: କିନ୍ତୁ ମୋ' ପଞ୍ଜୁରୀ ତାଲା ପଡ଼ିଛି ।

: ମୋ' ପାଖରେ ଚାବି ଅଛି ।

ଶୁଆର ଏ କଥା ଶୁଣି ସେଠାକାର ପ୍ରତ୍ୟେକ ଲୋକ ରାଗିଗଲେ । ''ବଦ୍‌ମାସ ଝିଅ ! ଓହୋ, ଆମେ ଏବେ ଜାଣିଲୁ ଟୁଟି ବେକରୁ ଚାବି ଚୋରିକରି ତୁ ପ୍ରସ୍ପେରୋକୁ ମୁକ୍ତ କରିଛୁ । ତା'ପରେ ପ୍ରସ୍ପେରୋ ବାଘର ପଞ୍ଜୁରୀ ଭାଙ୍ଗି ତାକୁ ବାହାର କରିଛି ।'' ଅନ୍ୟମାନେ, ''ହଁ-ହଁ, ଠିକ୍ କହୁଛନ୍ତି'' ବୋଲି ଚିତ୍କାର କଲେ ।

ସୁଓକ୍ କିଛି ଉତ୍ତର ଦେଲାନାହିଁ ।

''ଏଇ ମିଛ କଣ୍ଢେଇ ଟୁଟିକୁ ଠକି ପ୍ରସ୍ପେରୋକୁ ମୁକ୍ତ କରିଛି । ତା'ପାଇଁ ଚିଡ଼ିଆଖାନାର ଶ୍ରେଷ୍ଠ ବାଘର ମୃତ୍ୟୁ ହେଲା ।''

ବିଚାର କରାଯାଇ ସ୍ଥିର ହେଲା ସୁଓକ୍‌କୁ ସେଇ ବାଘମାନଙ୍କର ଶୀକାର ହେବାକୁ ଛଡ଼ାଯିବ । ତଥାପି ସୁଓକ୍ କିଛି କହିଲାନାହିଁ ।

ସମସ୍ତେ ଚିଡ଼ିଆଖାନାରେ ପହଞ୍ଚିଲେ । ତିନି ମୋଟା ଲୋକ ଓ ତାଙ୍କ ଅଫିସର୍‌ମାନଙ୍କୁ ତାର ଜାଲି ଘେରା ହୋଇ ରଖାଗଲା କାଳେ କିଛି ବିପଦ ପଡ଼ିବ ।

ଆକାଶ ଖୁବ୍ ସୁନ୍ଦର ଦିଶୁଥାଏ । ସକାଳର ସୂର୍ଯ୍ୟ କିରଣରେ ଶୁଆମାନେ ତାଙ୍କର ରଙ୍ଗୀନ୍ ପର ଖୋଲି ନାଚୁଥାଆନ୍ତି । ମାଙ୍କଡ଼ମାନେ ଡିଆଡେଇଁ କରୁଥାନ୍ତି । ବିଚରା ସୁଓକ୍ ଏସବୁଆଡ଼େ ଚାହୁଁନଥାଏ । ସେ ବୋଧ-ହୁଏ ଭୟରେ ବାଘପିଞ୍ଜରା ଆଡ଼େ ଚାହିଁଥାଏ ।

ବାଘମାନେ ଲୋଭିଲା ଦୃଷ୍ଟିରେ ମଣିଷମାନଙ୍କୁ



ଚାହିଁ ରହିଥା'ନ୍ତି । ଏତିକିବେଳେ ଜଣେ କେହି ବାଘ ପୋଷାମନେଇବାକାରୀ ବାଘ ପଞ୍ଜୁରୀ ଖୋଲି ପାଟିକଲା, ''ଆଲିହ୍ ।'' ଉଆସ୍ୱର ବ୍ୟାଣ୍ଡ ବାଜୁଥାଏ ।

ତିନି ମୋଟା ଲୋକ ମନଖୁସିରେ ହସୁଥାଆନ୍ତି । ସୁଓକ୍‌କୁ ବାଘ ପିଞ୍ଜରା ପାଖରେ ପକାଇ ଦିଆଗଲା । ସେ ବିଚାରୀ ଉପରକୁ ମୁହଁକରି ଆକାଶକୁ ଚାହିଁଥାଏ ।

ଏକାଥରକେ ତିନିଟା ବାଘ ତା' ଆଡ଼କୁ ମାଡ଼ିଆସି ତା' ଉପରେ ଚଢ଼ିଗଲେ ଓ ତାକୁ ଶୁଙ୍ଘିଲେ । କିନ୍ତୁ ମୁହଁ ଶୁଖାଇ ଫେରିଗଲେ ।

ତା'ପରେ ସମସ୍ତେ ଜାଣିଲେ ଯେ ଏଇଟା ଏକ ଜୀବନ୍ତ ଝିଅ ନୁହେଁ, ଏକ କଣ୍ଢେଇ । ପାଞ୍ଚମିନିଟ୍ ଧରି ସମସ୍ତେ ନୀରବ ହୋଇଗଲେ ।

ହଠାତ୍ ସମସ୍ତ ନୀରବତା ଭଙ୍ଗକରି ଭୀଷଣ ଜୋର୍‌ରେ ବୋମା ଫୁଟିବା ଶବ୍ଦ ଶୁଭିଲା । ତା'ପରେ ଆହୁରି ଜୋର୍‌ରେ ତୋପ ସବୁ ଫୁଟିଲା । ସମସ୍ତେ ଭୟରେ ଚିତ୍କାର କଲେ । ତିନି ମୋଟା ଲୋକଙ୍କ ଦଳର ପ୍ରାୟ ଅଧିକାଂଶ ଜଗୁଆଳ ଓ ସୈନ୍ୟ ପ୍ରସ୍ପେରୋ ଟିବୁଲ୍ ଦଳକୁ ଚାଲିଯାଇଥିଲେ । ଏଣୁ ଯୁଦ୍ଧ ବା କିଏ କରିବ ? ସେମାନେ ଡରରେ ଥରୁଥିଲେ ।

ପ୍ରସ୍ପେରୋ, ଟିବୁଲ୍ ଓ ଅନ୍ୟମାନେ, ''ହୁରରା. . . ହୁରରା . . .'' ଚିତ୍କାର କରୁଥିଲେ । ''ଆମେ ବିଜୟ ହାସଲ କଲୁ ।'' ତିନି ମୋଟା ଲୋକଙ୍କୁ ବନ୍ଦୀ କରାଗଲା । ସେମାନଙ୍କୁ ବାନ୍ଧିନେଇ ବଡ଼ ବିଚାର ଘରେ ରଖାଗଲା । ଏତିକିବେଳେ ସେ ବଡ଼ ଘଣ୍ଟାରେ କେତେ ବାଜିଲା ଭାବି ସମସ୍ତେ ଚାହିଁଲେ ।

ଆଶ୍ଚର୍ଯ୍ୟ ! ଘଣ୍ଟାର କବାଟ ଖୋଲିଗଲା । ସୁନ୍ଦର ଛୋଟ ଝିଅଟିଏ ତା' ଭିତରେ ବସି ହସୁଥିଲା । ନୀଳ ଆଖିର ଜଗୁଆଳଟି ଘଣ୍ଟା ବାକ୍‌ସରୁ ତାକୁ ଆସ୍ତେ ବାହାରକରି ଆଣିଲା ।

ସେଇ ଜଗୁଆଳ ଏକ-ଦୁଇ-ତିନ୍ ନାଚ ମାଷ୍ଟରର କାଗଜ ବାକ୍‌ସରୁ କଣ୍ଢେଇକୁ ଆଣିଥିଲା ।

ତା'ପରେ ସେ ବଡ଼ ଅଫିସର ସୁଓକ୍‌କୁ ନେଇ ତିନି ମୋଟା ଲୋକଙ୍କ ପାଖକୁ ଯିବାବେଳେ ସେଇ ନୀଳ ଆଖିର ଜଗୁଆଳ ତାଙ୍କୁ ବିଧାମାରି ଅଚେତ୍ କରି ତଳେ ପକାଇଦେଇ ପ୍ରକୃତ ସୁଓକ୍‌କୁ ଘଣ୍ଟା ଭିତରେ ଲୁଚେଇ ଦେଇଥିଲା ଏବଂ ତା' ବଦଳରେ ତିନି ମୋଟା ଲୋକଙ୍କ ପାଖରେ ସେଇ ଭଙ୍ଗା ଚିରା କଣ୍ଢେଇଟା ରଖି ତାଙ୍କୁ ଭୁଲେଇ ଦେଲା ।

ସମସ୍ତେ ସେଇ କୁନି ଝିଅକୁ ଆନନ୍ଦରେ କୋଳକୁ ଉଠେଇ ନେଉଥାଆନ୍ତି । ସୁଓକ୍ ହସି ହସି ନାଚି ନାଚି



ମନ ଆନନ୍ଦରେ ବୁଲୁଥାଏ । ପ୍ରସ୍ପେରୋ ଆନନ୍ଦରେ କାନ୍ଦିପକେଇ ସୁଓକ୍‌କୁ କୋଳକୁ ଉଠେଇ ନେଇ କହିଲା, ''ସୁନା ଝିଅ ସୁଓକ୍, ତୁ ମୋ' ଜୀବନ ବଞ୍ଚେଇ ଦେଇଛୁ ।'' ସମସ୍ତେ ଚିତ୍କାର କଲେ, ''ସୁଓକ୍, ଆମ ପାଖକୁ ଆସ ।'' ସୁଓକ୍ ସେମିତି ହସି ହସି ନାଚି ବୁଲୁଥାଏ । ଯେଉଁ ଲୁହା ପଞ୍ଜୁରୀରେ ପ୍ରସ୍ପେରୋକୁ ବନ୍ଦ କରାଯାଇ ରଖାଯାଇଥିଲା, ସେହି ପଞ୍ଜୁରୀରେ ତିନି ମୋଟା ଲୋକଙ୍କୁ ବନ୍ଦୀ କରାଯାଇ ରଖାଗଲା ।

## ଶେଷ କଥା

ଯା' ଭିତରେ ଗୋଟିଏ ବର୍ଷ ବିତିଯାଇଛି । ପୁଣି ସେ ଦିନଟି ଆସିଛି । ସମସ୍ତେ ସେଇ ଆନନ୍ଦର ଦିନଟିକୁ

ପାଳୁଛନ୍ତି, ଯେଉଁଦିନ କି ସେମାନେ ତିନି ମୋଟା-ଲୋକଙ୍କୁ ବନ୍ଦୀ କରିଥିଲେ ।

ସେଦିନ ତାରା ଛକରେ ପିଲାମାନଙ୍କର ଗୋଟାଏ ସାଂସ୍କୃତିକ କାର୍ଯ୍ୟକ୍ରମ ହେଉଥାଏ । ପ୍ରଚାର ପତ୍ର ମରା-ଯାଇ ସେଥିରେ ସୁଓକ୍ ନାଚ ଦେଖାଇବ ବୋଲି ଲେଖା-ଯାଇଥାଏ । ହଜାର ହଜାର ସାନ ସାନ ପିଲା ସେମାନଙ୍କ ପ୍ରିୟ ଅଭିନେତ୍ରୀଟିକୁ ଦେଖିବେ ବୋଲି ଅପେକ୍ଷା କରି ରହିଥାଆନ୍ତି ।

କିନ୍ତୁ ସେ ଏକା ଏକା ପେଣ୍ଡାଲ୍‌କୁ ଆସିନାହିଁ । ତା' ସାଙ୍ଗରେ ଥିଲା ସୁନେଲି ବାଳ ଥିବା ସୁନ୍ଦର ପୁଅଟିଏ । ପିଲାଟି ତା'ର ସାନଭାଇ । ସେହି ପିଲାଟି ଦିନେ ତିନି ମୋଟା ଲୋକଙ୍କର ଉତ୍ତରାଧିକାରୀ ଥିଲା ।

ସହରଟି ହସଖୁସିରେ ଜୀବନ୍ତ ହୋଇଉଠିଲା । ଚାରିଆଡେ ପତକା ଉଡ଼ିଲା, ସେମାନଙ୍କ ଉପରକୁ ସୁନ୍ଦର ଗୋଲାପ ସବୁ ପକାହେଲା । ଘୋଡ଼ାମାନେ ବିଭିନ୍ନ ଖେଳ ଦେଖାଇ ସେମାନଙ୍କୁ ସମ୍ମାନ ଦେଖା-ଇଲେ । ଏସବୁ ପରେ ସୁଓକ୍ ଓ ଟୁଟି ଫୁଲରେ ପୋତିହୋଇ ବସିଥାଆନ୍ତି । ତାଙ୍କ ଚାରିପଟେ ପିଲା-ମାନେ ଘେରିକରି ବସିଥାଆନ୍ତି । ଏତିକିବେଳେ ସୁଓକ୍ ଛୋଟ ପଟାଟିଏ ତା'ର ନୂଆ ପୋଷାକର ପକେଟ୍‌ରୁ କାଢ଼ି ପଢ଼ିବାକୁ ଆରମ୍ଭ କଲା ।

ତୁମେ ନିଶ୍ଚୟ ମନେ ରଖିଥିବ ଯେ ସେ ସେଇ ପଟାଖଣ୍ଡିକ କେଉଁଠୁ ପାଇଲା । ସେହି ଭୟଙ୍କର ରାତିରେ ସେହି ଅଦ୍ଭୁତ ଲୋକଟି ଯେ କି ଚିଡ଼ିଆଖାନାର ପଞ୍ଜୁରୀ ଭିତରେ ଥିଲା, ସେ ସୁଓକ୍‌କୁ ଏ ଖଣ୍ଡିକ ଦେଇଥିଲା ।

ସେ ପଟାରେ ଲେଖାଥିଲା –

"ସୁଓକ୍ ଓ ଟୁଟି – ଆଗରୁ ତୁମେ ଦୁହେଁ ଏକାଠି ଥିଲ । ଯେତେବେଳେ ତୁମେ ଚାରି-ପାଞ୍ଚ ବର୍ଷର ହୋଇଥିଲ, ତୁମ ଘରୁ ତିନି ମୋଟା ଲୋକଙ୍କ ଜଗୁଆଳ ତୁମମାନଙ୍କୁ ଚୋରେଇ ଆଣିଲେ । ମୋ ନାଁ 'ଟୁବ୍' । ମୁଁ ଜଣେ ବୈଜ୍ଞାନିକ । ମତେ ଉଆସକୁ ନେଇ ତୁମ ଦୁହିଁଙ୍କୁ ଦେଖାଇ ତିନି ମୋଟା ଲୋକ କହିଲେ, ଏ ଝିଅକୁ ଦେଖୁଛ ? ଠିକ୍ ୟା'ରିପରି ଗୋଟାଏ କଣ୍ଢେଇ କରିଦିଅ । ମୁଁ ଜାଣିପାରିଲିନି କାହିଁକି ସେମାନେ ଏମିତି କହିଲେ । ତା'ପରେ ମୁଁ କଣ୍ଢେଇ ତିଆରି କରିଦେଲି । କଣ୍ଢେଇଟି ଠିକ୍ ଜୀବନ୍ତ ଝିଅଭଳି ଦିଶୁଥିଲା । ସେତେ-ବେଳେ ସୁଓକ୍‌କୁ ପାଞ୍ଚବର୍ଷ । ସେ ଦିନେ ବଡ଼ ଝିଅ ହେବ ଏବଂ ଏସବୁ ଜାଣି ଦୁଃଖ କରିବ । ତେଣୁ କଣ୍ଢେଇଟିକୁ ମୁଁ ବଡ଼କରି ତିଆରି କଲି । ତା'ପରେ ତୁମକୁ ଅଲଗା କରାଗଲା । ସୁଓକ୍‌କୁ ଗୋଟାଏ ସର୍କସ୍ ଦଳକୁ ଦିଆହୋଇ ସେମାନେ ଚଲାକ୍ 'ଲରା' ଶୁଆକୁ ଆଣିଲେ । ସେ ମଣିଷର କଥାଗୁଡ଼ିକ ମନେରଖି ସୁନ୍ଦର-ଭାବରେ କହିପାରୁଥିଲା । ତିନି ମୋଟା ଲୋକ କହିଲେ, ଟୁଟିର ହୃଦୟ କାଢ଼ିନେଇ ଲୁହାର ହୃଦୟ ଲଗେଇଦିଅ । ମୁଁ ଏଥିରେ ରାଜି ନ ହେବାରୁ ମତେ ପଶୁଶାଳାରେ ଲୁହାପଞ୍ଜୁରୀରେ ରଖାଗଲା । ଦୀର୍ଘ ଆଠବର୍ଷ ଧରି ବନ୍ଦୀ ହେବାରୁ ମୋର ଦାଢ଼ୀ, ମୁଣ୍ଡବାଳ ସବୁ ବଢ଼ି-ଗଲା । ମୋ' ଦାନ୍ତ ହଳଦିଆ ହୋଇଗଲା । କିନ୍ତୁ ମୁଁ ତତେ ଭୁଲିଯାଇନଥିଲି । ମୁଁ ଚାହେଁ ତୁ ମୋତେ କ୍ଷମା କରିବୁ । ଟୁଟିରେ, ତୁ ମଧ ମତେ କ୍ଷମା କରିବୁ । ମୁଁ ତତେ ଠକି କଣ୍ଢେଇଟିଏ ଦେଇଥିଲି ।"



